# ଉଦ୍ବେଳିତ

-ଦେଶୀ-



-ଶ୍ରୀଉଦୟଶଙ୍କର ପାଣିଗ୍ରାହୀ-

ଭୂପର୍ଯ୍ୟଟକ ଶ୍ରୀଯୁକ୍ତ ରାମନାଥ ବିଶ୍ୱାସଙ୍କ ଲେଖାର ଓଡ଼ିଆ ରୂପାନ୍ତର

# [illegible]

## - ଦେଶ -


ଅନୁବାଦକ :—

**ଶ୍ରୀ ଉମେଶ ଚନ୍ଦ୍ର ପାଣିଗ୍ରାହୀ**





ପ୍ରକାଶକ :— **ଶ୍ରୀ ପ୍ରଫୁଲ୍ଲଚନ୍ଦ୍ର ଦାସ**

**ମନମୋହନ ପୁସ୍ତକାଳୟ**

କଲିକତା ଓ କଟକ ।

# ନିବେଦନ

ଭୂ-ପର୍ଯ୍ୟଟକ ଶ୍ରୀ ରାମନାଥ ବିଶ୍ୱାସ ୧୯୩୧ର ଜୁଲାଇ ତା ୭ ରି-ଖରେ ସିଙ୍ଗାପୁରରୁ ବାହାରି ମାଲୟ, ଶ୍ୟାମ, ଇଣ୍ଡୋଚୀନ, ଚୀନ, କୋରିଆ, ଜାପାନ ହୋଇ କେନେଡ଼ା ଯାଇଥିଲେ । କେନେଡ଼ାରୁ ବତାଣ୍ଡ଼ିତ ହୋଇ ଫେରି ଆସିଲା ବେଳେ ଫିଲିପାଇନ, ବାଲି, ଜାଭା, ହୋଇ ପୁଣି ସିଙ୍ଗାପୁର ଫେରି ଆସିଲେ । ଦ୍ୱିତୀୟଥର ପୁଣି ବର୍ମାରୁ ଭ୍ରମଣ ଆରମ୍ଭ କରି ଭାରତବର୍ଷ, ଅଫଗାନିସ୍ଥାନ, ଇରାନ, ଇରାକ, ସିରିଆ, ଲିବାନନ, ତୁର୍କୀ, ବୁଲଗେରିଆ, ଯୁଗୋସ୍ଲାଭିଆ, ହଙ୍ଗେରୀ, ଅଷ୍ଟ୍ରିଆ, ଚେକୋସ୍ଲୋଭାକିଆ, ଜର୍ମାନୀ, ହଲାଣ୍ଡ, ବେଲଜିଅମ ଏବଂ ଫ୍ରାନ୍ସ ହୋଇ ଇଂଲଣ୍ଡରେ ପହଞ୍ଚିଲେ । ଇଂଲଣ୍ଡରୁ ଭଗ୍ନସ୍ୱାସ୍ଥ୍ୟ ନେଇ ଭାରତକୁ ଫେରିଆସି ସୁସ୍ଥ ହେଲାପରେ ପୁଣି ଆଫ୍ରିକା ଯାଇ କେନିଆ, ଉଗାଣ୍ଡା, ଟାଙ୍ଗାନିକା, ନାଇଆସାଲେଣ୍ଡ, ଉତ୍ତର ଓ ଦକ୍ଷିଣ ରୋଡେସିଆ ପର୍ତ୍ତୁଗୀଜ ପୂର୍ବ ଆଫ୍ରିକା, ଟ୍ରାନ୍ସଭାଲ, ନାଟାଲ, କେପ ପ୍ରଭିନ୍ସ ହୋଇ ପୁଣି ଇଂଲଣ୍ଡ ଗଲେ, ଆଉ ସେଠାରୁ ଆମେରିକାର ସଂଯୁକ୍ତ ପ୍ରଦେ-ଶକୁ ଯାଇ କାନେଡ଼ା ପ୍ରଭୃତି ବୁଲି ୧୯୪୦ର ପ୍ରଥମ ଭାଗରେ ସ୍ୱଦେଶକୁ ଫେରି ଆସିଲେ ।

ରାମନାଥ ବାବୁ ତାଙ୍କର ଏହି ଭ୍ରମଣ ମଧ୍ୟରେ ୧୯୩୭ ରେ ଆରବ ଦେଶ ବୁଲିଥିଲେ । ଏହି ଭ୍ରମଣ କାହାଣୀଟି ବହୁଦିନର ପୁରୁଣା ହେଲେ ମଧ୍ୟ ଆମକୁ ଏହି କଥାଟି ମନେ ରଖିବାକୁ ହେବ ଯେ ଔପନିବେଶିକ ଦେଶର ପରିବର୍ତ୍ତନ ଖୁବ୍ ଧୀର ଗତିରେ ହୁଏ କିମ୍ବା ଏକାବେଳକେ ହୁଏ ନାହିଁ । ଆରବ ଦେଶର ଯେଉଁ ପରିବର୍ତ୍ତନ ହୋଇଛି, ତାହା ଅତି ନଗଣ୍ୟ ! ସୁତରାଂ ଏହି ଭ୍ରମଣ କାହାଣୀଟି ବର୍ତ୍ତମାନ ମଧ୍ୟ ପୁରୁଣା ନୁହେଁ ବୋଲି ସ୍ୱୀକାର କରାଯାଇ ପାରେ ।





ପର ଅଙ୍କରେ ଆମେ ଅନେକ କଥା ଦେଖି ଆସୁଥାଇଁ । ଆରବ ସମ୍ବନ୍ଧରେ ଆମେ ଯେଉଁ ସବୁ ସମ୍ବାଦ ଜାଣୁ ତାହାସବୁ ଇଉରୋପୀୟ ଲେଖକମାନଙ୍କ ପାଖରୁ ଧାର କରି କିମ୍ବା ମନଗଢ଼ା କଥାରୁ । ରାମନାଥ ବାବୁ ଆରବ ଭିତରେ ବୁଲି, ନାନା ପ୍ରକାର ଲୋକଙ୍କ ସଂସର୍ଗରେ ଆସି ଯେଉଁ ଅଭିଜ୍ଞତା ଅର୍ଜନ କରି ପାରିଛନ୍ତି । ତାହା ସେ ଏହି ବହି-ଖଣ୍ଡିକରେ ଚିହ୍ନିତ କରିବାକୁ ଚେଷ୍ଟା କରିଛନ୍ତି । ରାମନାଥ ବାବୁ ଆରବଦେଶ ସମ୍ବନ୍ଧରେ ଯେଉଁ କଣ୍ଠିତ ସତ୍ୟର ଆଲୋକ ଆମଭିତରେ ଦେଇ ପାରିଛନ୍ତି ତାହାର ଓଡ଼ିଆ ରୂପାନ୍ତର ଆଜି ଉତ୍କଳର ପାଠକ ପାଠିକା ମାନଙ୍କ ହାତରେ ଦେଇ ଆନନ୍ଦ ଅନୁଭବ କରୁଛି ।

ଅସୁସ୍ଥ ଶରୀର ଘେନି ବହି ଖଣ୍ଡିକର ଅନୁବାଦ କାର୍ଯ୍ୟ ଆରମ୍ଭ କଲାବେଳେ ମତେ ବର୍ତ୍ତମାନ ସରକାରଙ୍କ ଅତିଥିରୂପେ ବନ୍ଦୀଶାଳାକୁ ଯିବାକୁ ପଡ଼ିଲା । ସେହି କାରାଗାରର ପାଷାଣ ପ୍ରାଚୀରର ଅନ୍ତରାଳରେ ବସି ଏହି ବହି ଖଣ୍ଡିକ ଶେଷ କରି ଦେଶବାସୀଙ୍କ ହାତରେ ଟେକି ଦେଲି । ମୋର ସେହି ଶ୍ରମ ସଫଳ ହେବ ଯଦି ଦେଶବାସୀଙ୍କ ଦ୍ୱାରା ବହି ଖଣ୍ଡିକର ଆଦର ହୁଏ ।

ରାମନାଥ ବାବୁ ମତେ ପୁସ୍ତକର ଅନୁବାଦ ଅଧିକାର ଦେଇ-ଥିବାରୁ ତାଙ୍କୁ କୃତଜ୍ଞତା ଜଣାଉଛି । ପରି ଶେଷରେ ଶ୍ରୀଯୁକ୍ତ ପ୍ରଫୁଲ୍ଲ-ଚନ୍ଦ୍ର ଦାସ ପ୍ରଥମ ସଂସ୍କରଣର ପ୍ରକାଶନ ଭାର ନେଇ ବହିଖଣ୍ଡିକ ସୁନ୍ଦର କରି ଜନସାଧାରଣଙ୍କ ହାତରେ ଦେଇ ଥିବାରୁ ତାଙ୍କୁ ହାର୍ଦ୍ଦିକ ଅଭିନନ୍ଦନ ଜଣାଉଛି ।

ଅନୁବାଦକ—

ରାଜକାରାଗାର ମୟୂରଭଞ୍ଜ
୨୧-୨-୪୭



# ଇରାକ

ଇରାନର ଶୀତଳ ପାର୍ବତ୍ୟ ଭୂମି ଅତିକ୍ରମ କରି, ଇରାକ ନିକଟରେ ପହୁଞ୍ଚି ବୁଝିପାରିଲି ଯେ ଏଥର ମରୁ ଭୂମିରେ ପହୁଞ୍ଚି ଯାଇଛି । ଦିନ ଦି'ପହର ଖରା ଯେତେବେଳେ ମୁଣ୍ଡ ଉପରେ ଫାଟି ପଡ଼ୁଥିଲା, ସେତେବେଳେ ପରିଶ୍ରାନ୍ତ କଳେବର ନେଇ କାସରି-ସିରିନ୍ ନାମକ ଗୋଟିଏ ସହରରେ ପହଞ୍ଚିଲି । ସହରଟି ଇରାନ ରାଜ୍ୟର ଅନ୍ତର୍ଭୁକ୍ତ; କିନ୍ତୁ ଇରାକର ପବନ ଆସି ସେଠାରେ ଲାଗୁଛି । ଗୋଟିଏ ଆରବ୍ ହୋଟେଲରେ ଯାଇ ବସିଲି । ହୋଟେଲଟି ଭଦ୍ରଲୋକଙ୍କ ବାସ ସ୍ଥାନର ସମ୍ପୂର୍ଣ୍ଣ ଅଯୋଗ୍ୟ, କାରଣ ଏହି ହୋଟେଲରେ ପ୍ରାୟ ଆରବ୍ ମୂଲିଆ ମଜୁରଗଣ ରହନ୍ତି । ହୋଟେଲର ମାଲିକ ମୋତେ ବୁଝାଇ କହିଲା, ଏହି ହୋଟେଲରେ କୌଣସି ଭଦ୍ରଲୋକ ଆସି ରହନ୍ତି ନାହିଁ । ବିଦେଶୀ କଥା ତ ସ୍ୱତନ୍ତ୍ର—ତେବେ ଯଦି ମୁଁ ରହିବାକୁ ଚାହେଁ, ମୋ ପାଇଁ ସେ କିଛି ସ୍ୱତନ୍ତ୍ର ବନ୍ଦୋବସ୍ତ କରିପାରନ୍ତି ଏବଂ ତାହା ସମୟ ସାପେକ୍ଷ । ହୋଟେଲର ମାଲିକଙ୍କୁ ଉତ୍ତରରେ ମୁଁ କହିଲି—ମୁଁ ଭଦ୍ରଲୋକ ନୁହେଁ, ମୁଁ ଜଣେ ଦରିଦ୍ର ହିନ୍ଦୁ, ସୁତରାଂ ସଙ୍କୋଚ କରିବାର କିଛି ନାହିଁ । ହୋଟେଲର ମାଲିକ ଆଉ କିଛି ନ କହି ଗୋଟିଏ "କାମ୍‌ରା" (କୋଠରୀ) ଦେଖାଇ ଦେଇ କହିଲା "ଅଫେନ୍ଦି", ବାହାରକୁ ଯିବା ସମୟରେ ଦରଜାରେ ତାଲା ବନ୍ଦ କରିଯିବେ ନଚେତ୍ କୌଣସି ଅଭଦ୍ର ଆପଣଙ୍କ ଜିନିଷ ପତ୍ର ଖୋଲାଖୋଲି କରିପାରେ । କଥାଟା ତା'ର ବୁଝିପାରିଥିଲି, ବିଦେଶକୁ ଗଲେ ଏତିକି ଇଙ୍ଗିତ ମାତ୍ର ଯଥେଷ୍ଟ !





ଗାଧୁଆ ଘରକୁ ଯାଇ ଅଣ୍ଡା ପାଣିରେ ଗାଧୋଇ ଆସି ଆରବର ସଜ୍ଜିତ ବିଛଣାଟି ପରୀକ୍ଷା କରି ବସିଲି । ଗୋଟିଏ ତୁଳାର ନରମ ଗଦି, ଆଉ ତା'ଉପରେ ଗୋଟିଏ ମୋଟା ଖଦଡ଼ ଚଦର ପଡ଼ିଥିଲା । ଦୁଇଟା ତୁଳାର ତକିଆ କିନ୍ତୁ ତା' ଉପରେ ମୁଣ୍ଡ ରଖିଲେ ଆଦୌ ଗରମ ଲାଗେ ନାହିଁ । କାରଣ ତା'ର ଖୋଳ ଗୁଡ଼ିକ ମଧ୍ୟ ମୋଟା ଖଦଡ଼ର ଥିଲା । ଖଦଡ଼ ଗରମରେ ଥଣ୍ଡା ଆଉ ଥଣ୍ଡାରେ ଗରମ ରହେ ବୋଲି କହନ୍ତି । ସେତିକ ଦେଖି ମୁଁ ତୁନି ନ ରହି, ବିଛଣା ଉଠାଇ ଖଟ ଖଣ୍ଡିକ ମଧ୍ୟ ପରୀକ୍ଷା କରି ଦେଖିଲି । ଆରବ ହୋଟେଲରେ ଖଟ ଖଣ୍ଡିକ ଗୋଟିଏ ବିଶିଷ୍ଟ ବସ୍ତୁ । ମୋଟା ଲୋମର ଦଉଡ଼ିରେ ଖଟଟି ବୁଣା, ଆଉ ଠିକ୍ ମଝିରେ ତା'ର ଗୋଟିଏ ସୁନ୍ଦର ପଦ୍ମ ବୁଣା ହୋଇଛି । ଆଉ ଦେଖିବାର କିଛି ନଥିଲା । ବିଛଣା କରି ଭଲ ପୋଷାକ ପିନ୍ଧି ନିକଟରୁ ଗୋଟିଏ ଦୋକାନକୁ ଯାଇ ଖାଇ ଆସି ଶୋଇ ପଡ଼ିଲି । ବିଛଣାରେ ପଡ଼ିବା ସଙ୍ଗେ ସଙ୍ଗେ ନିଦ ଆସିଗଲା ।

ଅନେକ ଦିନ ହେଲା ଅରବ ଦେଶ ଦେଖିଆସି ଆଜି ସେ ଦେଶ ସମ୍ବନ୍ଧରେ ଭ୍ରମଣ କାହାଣୀ ଲେଖୁଛି । ୧୯୬୪ ସାଲ କଥା । ତେବେ ମଧ୍ୟ ମୋ'ର ବିଶ୍ୱାସ ଭ୍ରମଣ କାହାଣୀ କେବେ ପୁରୁଣା ହୁଏ ନାହିଁ । ଆଜି ମଧ୍ୟ କାଟରି-ସିବନ୍‌ର କୌଣସି ପରିବର୍ତ୍ତନ ହୋଇଛି କି ନାହିଁ ଜାଣେ ନା । ଆଜି ମଧ୍ୟ ମନେ ହୁଏ, ସେଇ ସହରରେ "ହ୍ୱାଇଟ ଆଉ କାଉଣ୍ଟର ସ୍ପାଇଂ" ଚାଲୁଛି, ଆଜି ମଧ୍ୟ ମନେ ହୁଏ ଦେଶଭକ୍ତଗଣଙ୍କର ନିର୍ଜନ ବାସ ସ୍ଥାନ ବୋଲି କାଟରି-ସିବନ୍‌ର ନାମ ସୁପରିଚିତ । ଏ ସମ୍ବନ୍ଧରେ ଆହୁରି ଅନେକ କଥା ଅଛି, ତେବେ କାଟରି-ସିବନ୍ ଆରବର ବାହାରେ ବୋଲି ଏଠାରେ ସେ ପ୍ରସଙ୍ଗରେ କିଛି କହୁନି ।

ହୋଟେଲବାଲା ବଡ଼ ଦୟାଳୁ । ସେ ବୁଝିଥିଲା ମୁଁ ଜଣେ ସାଧାରଣ ଲୋକ ଆଉ ସାଧାରଣ ମୁସାଫିର । ତେବେ ହିନ୍ଦୁ ବୋଲି ବୋଧହୁଏ ଟିକିଏ ତା'ର ଜାତି ଅଭିମାନ ଆସିଥିଲା । ଆଜି ନିଜ ଦେଶରେ ଶୁଣୁଛି ଅନେକ ଗୁଡ଼ିଏ "ସ୍ଥାନ" ତିଆରି ହେବ, କିନ୍ତୁ "ହିନ୍ଦୁସ୍ଥାନର ହିନ୍ଦୁ"ଙ୍କୁ କହୁଛି ତୁମେ ଯେଉଁ ଧର୍ମର ହୁଅ ପଛକେ ଭାବନାହିଁ ଯେ ବିଦେଶକୁ ଯାଇ ଧର୍ମର ନାମରେ କୌଣସି ସହାନୁଭୂତି ପାଇବ । ମନେ-ରଖ ଯେ ତୁମେ କେବଳ ହିନ୍ଦୁ । ଆରବ ଦେଶରେ ଆମକୁ ସବୁ ହିନ୍ଦୁ ବୋଲି କହନ୍ତି । ହୋଟେଲବାଲା ପରସୀ ନୀତିରେ କବାଟରେ ଆବାଜ୍ ଦେଲା । ମୁଁ ଦ୍ୱାର ଖୋଲିବା ସଙ୍ଗେ ସଙ୍ଗେ ଦୁଇଜଣ ଧଳା ପୋଷାକ ପିନ୍ଧା ପୋଲିସ ଘର ଭିତରକୁ ଆସି ତାଙ୍କର ପରିଚୟ ଦେଇ ମୋ'ର ପୋଟଳିଟା ଭଲ କରି ଖାନତଲାସ କରି ପାସପୋର୍ଟର ନମ୍ବର ନେଇ ବାହାରି ଗଲେ। ମୁଁ ଶୂନ୍ୟ ମନରେ ଶୋଇ ଶୋଇ ଭାବିବାକୁ ଲାଗିଲି ଏଇଟା ମୋ'ର ଦରିଦ୍ରତାର ଦୋଷ ନା ମୁଁ ଯେ ଜଣେ ଭାରତବାସୀ ତା'ର ଦୋଷ,—କେଉଁଟା ?

କାଚସି-ସିରନ୍ ଛୋଟ ସହରଟିଏ । ସନ୍ଧ୍ୟାବେଳେ ବୁଲି ବାହାରିଥିଲି । ବେଶୀ କିଛି ଦେଖିବାର ନ ଥିବାରୁ ହୋଟେଲ୍‌କୁ ଫେରି ଦେହ, ହାତ, ପୋଛାପୋଛି କରି ଗୋଟିଏ ରେସ୍ତୋରାରେ ଯାଇ ବସିଲି । ରେସ୍ତୋରାକୁ ନାନା ପ୍ରକାର ଲୋକଙ୍କର ସିବା ଆସିବା ଲାଗିଛି । ଇରାକୀ ଆଉ ଇରାନୀ-ମାନଙ୍କର ସଂଖ୍ୟା ବେଶୀ । ସମସ୍ତେ ସାହେବୀ ପୋଷାକ ପିନ୍ଧିଛନ୍ତି । ଗରମରେ କଷ୍ଟ ହୁଏ ବୋଲି ଆମେ ଖୁବ୍ କମ୍ ଲୁଗାପଟା ବ୍ୟବହାର କରୁ, କିନ୍ତୁ ଏ ଦେଶରେ ସମସ୍ତେ ମାର୍ଜିତ ପୋଷାକରେ ରହିବାକୁ ଚାହାନ୍ତି । ସେଇଥିପାଇଁ ରେସ୍ତୋରାର ସମସ୍ତଙ୍କ ପୋଷାକ ମାର୍ଜିତ ରୁଚିର ଥିଲା ।



ରେଷ୍ଟୋରାରେ ଯେଉଁମାନେ ବସିଥିଲେ ସେମାନେ ବିଦେଶୀ ଭାଷାରେ କଥାବାର୍ତ୍ତା କରୁଥିବା ଯୋଗୁଁ ମୋ ପକ୍ଷରେ ବୁଝିବାକୁ କଷ୍ଟ ହେଉ ନ ଥିଲା । ଇଂଲିଶ, ଫ୍ରେଞ୍ଚ ଆଉ ଜର୍ମାନୀ ଭାଷା ହେଉଛି ରେଷ୍ଟୋରାର ଭାଷା । ରାଜନୀତିକୁ ନେଇ କଥା ଚାଲିଥିଲା । କଥାର ବିଷୟବସ୍ତୁରୁ ଶୁଣି ମନେ ହେଉଥିଲା ଯାଙ୍କ ମଧ୍ୟରେ ରାଜନୀତି ସମ୍ବନ୍ଧରେ ଅନେକ ବହୁଦର୍ଶିତା ଅଛି । ଆମ ଦେଶରେ ରେଷ୍ଟୋରା କାହିଁକି 'ବହୁ' ଶିକ୍ଷିତ ସମାଜରେ ମଧ୍ୟ ଏହିପରି ଉଚ୍ଚାଙ୍ଗ ଧରଣର ରାଜନୈତିକ କଥା ବାର୍ତ୍ତା ଅତି କମ୍ ଶୁଣିଛୁ । ଆମର ଏହି ତ୍ରୁଟିର ଏକମାତ୍ର କାରଣ ହେଉଛି ଆମେ ରାଜନୀତିକୁ ନିଜସ୍ୱ କରିପାରି ନାହୁଁ ।

କାଟର୍-ସିରିନରୁ ଖାନାକିନ୍ ବେଶୀ ଦୂର ନୁହେଁ । ଇରାନର ସୀମା ପର୍ଯ୍ୟନ୍ତ ରାସ୍ତାଟା ଅତି କଦର୍ଯ୍ୟ ଥିଲା, ତେବେ ମଧ୍ୟ ଯେମିତି ଆରବ ବେଦୁଇନ ଆସି ଇରାନ ସୀମାରେ ତମ୍ବୁ ନ ପକାଏ ସେଥିପାଇଁ ଇରାନ ପୋଲିସ ତତ୍ପର ରହୁଥିଲା । ଇରାନ ସୀମା ଅତିକ୍ରମ କଲା ପରେ ସୁନ୍ଦର ପୀଚଢଳା ରାସ୍ତା । ରାସ୍ତାର ଦୁଇ ପାଖରେ ଦିଗନ୍ତବ୍ୟାପୀ ଅନନ୍ତ ମରୁ ପ୍ରାନ୍ତର ଧୂ ଧୂ କରୁଥିଲା । ମୁଁ ସେତେବେଳେ ରଙ୍ଗିନ୍ ଚଷମା ବ୍ୟବହାର କରୁଥିଲି ବୋଲି ପ୍ରଖର ସୂର୍ଯ୍ୟ କିରଣ କିମ୍ବା ଉତପ୍ତ ବାଲିପ୍ରାନ୍ତର ମୋତେ କଷ୍ଟ ଦେଇପାରି ନଥିଲା । କିଛିଦୂର ଅଗ୍ରସର ହେଲା ପରେ ରାସ୍ତା କଡ଼ରେ ଗୋଟିଏ ଆରବ ପରିବାରକୁ ବସିଥିବା ଦେଖି ଇଚ୍ଛା ହେଲା ତାଙ୍କ ସହିତ ଟିକିଏ ଆଳାପ କରିବା ପାଇଁ । ସାଇକେଲରୁ ଓହ୍ଲାଇ ତାଙ୍କ ପାଖକୁ ଯାଇ ଆମର ପ୍ରାଚୀନ ନିୟମାନୁଯାୟୀ ନମସ୍କାର କଲି । କାହାରି ଘରେ ଚୋର ପଶିଲେ ସେ ଯେପରି ଭୟ କାତର ହୋଇପଡ଼େ, ମୋ'ର ନମସ୍କାର ପାଇବା ପରେ ଏହି ଦରିଦ୍ର ଆରବ ପରିବାର ସେଇପରି ଭୟାକୁଳ ହୋଇ ପଡ଼ିଲେ, ଆଉ ସଂଗେ ସଂଗେ

ତାଙ୍କର ସଞ୍ଚିତ ଖାଦ୍ୟ ମୋ ପାଖରେ ଆଣି ଖାଇବାକୁ ରଖିଲେ । ମୁଁ ଭାବିଥିଲି ସେମାନେ ମୋ ପ୍ରତି ଦୟା ପ୍ରକାଶ କରୁଛନ୍ତି । ଖାଇସାରି ଯେତେବେଳେ ଅଗକୁ ବାହାରିଲି ସେତେବେଳେ ପୁଣି ନମସ୍କାର କଲି । ମୋ'ର ଏହି ବିଦାୟ ନମସ୍କାରରେ ସେମାନେ ଅତ୍ୟନ୍ତ ଭ୍ରୀତ ହୋଇ ପଡ଼ିଲେ ଆଉ ଗୋପନରେ ରକ୍ଷିତ କେତୋଟି ପଇସା ଆଣି ମୋ'ର ହାତରେ ରଖିଲେ ।

ଖାନାକନ୍ ଅତି ପାଖରେ । ବାପ ପୁଅ ବୋଧହୁଏ ସହରରୁ ଜିନିଷ ପତ୍ର କିଣାକିଣି କରି ଫେରୁଥିଲେ । ଏତିକି ବେଳେ ମୁଁ ସାଇକେଲରୁ ଓହ୍ଲାଇ "ରଫିକ୍" ବୋଲି ସମ୍ବୋଧନ କରି, ବାପଙ୍କୁ ନମସ୍କାର ଜଣାଇ ସହର ଆଉ କେତେଦୂର ବୋଲି ପଚାରିଲି । ଏହା ଦେଖି ଉଭୟଙ୍କ ମୁହଁ କଳାପଡ଼ିଗଲା । ବାପଙ୍କୁ ବିପଦରୁ ଉଦ୍ଧାର କରିବା ପାଇଁ, ପୁଅ ତା'ର, ବେକର ରୁପା ମାଦୁଲିଟା ଛିଡ଼ାଇ ମୋ ହାତରେ ଦେଲା ।

ଆଉ ଦାନ ଗ୍ରହଣ କରିବାର ଶକ୍ତି ମୋ'ର ରହିଲା ନାହିଁ । ଶରୀରଟି ମୋ'ର କମ୍ପି ଉଠିଲା । ଛାତି ଦୁରୁ ଦୁରୁ ହେଲା । ଏଇଟା ମରଣ ଭୟ ନୁହେଁ, ଏଇଟା ଯେ ପାପର ଭୟ । ଯେଉଁ କାର୍ଯ୍ୟରେ ସମାଜର କ୍ଷତି ହୁଏ ସେଇୟା ଯେ ମହାପାପ । ବୋଧହୁଏ ମୁଁ ଏମିତି କିଛି କରୁଛି ଯେଉଁଥିରେ ଆରବ ସମାଜର କ୍ଷତି ହେଉଛି । ତା ନହେଲେ ମୋ ମନଟା ଏତେ ଦୁର୍ବଳ ହେବ କାହିଁକି ?

ସୂର୍ଯ୍ୟ ଅସ୍ତ ହୋଇ ଯାଇଥାଏ । ପଶ୍ଚିମ ଆକାଶରେ ସେତେବେଳେ ସୁଦ୍ଧା ଲୋହିତ ଆଭାର ସ୍ପର୍ଶ ଲାଗି ରହିଥାଏ । ମୁଁ ସହରରେ ପହଞ୍ଚି ଯାଇଛି । କିନ୍ତୁ ସନ୍ଧ୍ୟାର ଆଜାନ ଶୁଣିବାକୁ ନ ପାଇ ମନେହେଲା ବୋଧହୁଏ ଏ ଗାଁରେ ମୁସଲମାନ ଆରବ ନାହାନ୍ତି, ଖ୍ରୀଷ୍ଟାନ ନତୁବା ଅବିଶ୍ୱାସୀଗଣ ଅଛନ୍ତି । ଯେ





ରହନ୍ତୁ ନା କାହିଁକି ମୋ'ର ରାତି ଗୋଟାକର କଥା ! ଗାଁରେ ପହଞ୍ଚି ଗୋଟିଏ କାଫେରେ ଯାଇ ବସିଲି । କାଫେର ମାଲିକ ଜଣେ ମୁସଲମାନ ଆରବ । ଲୋକଟି କିନ୍ତୁ ଦୟାଳୁ ବୋଲି ମନେହେଲା । କିନ୍ତୁ ନିକଟରେ କେତେଜଣ ଭଦ୍ର ପୋଷାକ-ଧାରି ଲୋକ ମୋ'ର ଉପସ୍ଥିତିକୁ ସନ୍ଦେହ ଦୃଷ୍ଟିରେ ଦେଖୁଥିଲେ ।

କାଫେର ମାଲିକ ଇଂରାଜି କହିପାରୁଥିଲା । ମୋତେ ବସିବାକୁ କହି ପଚାରିଲା—"ଆପଣ ବୋଧହୁଏ ଭୂପର୍ଯ୍ୟଟକ ।" ମୁଁ କହିଲି, 'ହଁ, ବନ୍ଧୁ' । ଆଉ କିଛି ନକହି ଦୋକାନି ମୋ ଆଗରେ କଫେ କାପଟିଏ ରଖି କହିଲା, "ଏଇ ନିଅନ୍ତୁ, ମୁଁ ଟିକିଏ ପରେ ଆସୁଛି ।"

ବୁଝିଲି 'ଟିକିଏ ପରେ ଆସୁଛି'ର ତାତ୍ପର୍ଯ୍ୟ କ'ଣ ହୋଇପାରେ । ମୁଣ୍ଡ ନୁଆଁଇ ଭାବୁଥିଲି ଅନେକ କଥା. ତାପରେ ସ୍ଥିର କଲି ଆଜି ମୁହଁ ଖୋଲି କଥା କହିବି, ସେଥିରେ ବିପଦ ଆସିଲେ ଆସିବ, ସେହି ବିପଦକୁ ବରଣ କରିନେବି । କାଫେର ମାଲିକ ଫେରି ଆସି କହିଲା—"ନିକଟରେ ରେଳ ଷ୍ଟେସନ ଆଉ ଷ୍ଟେସନ ମାଷ୍ଟର ଜଣେ ହିନ୍ଦୁ, ତାଙ୍କ ସହିତ ରହିଲେ ଆପଣଙ୍କର ଭଲ ହେବ ।" ମୁଁ ଆରବ ଭଦ୍ରଲୋକଙ୍କୁ କହିଲି—"ଯଦି ମୁଁ ମୋ ଦେଶବାସୀ ପାଖରେ ଯାଇ ରାତି କଟାଇଲି ତେବେ ଆପଣମାନଙ୍କର ବିଷୟରେ କ'ଣ ଅଭିଜ୍ଞତା ନେବି । ହିନ୍ଦୁ ଷ୍ଟେସନ ମାଷ୍ଟର ଆପଣମାନଙ୍କ ସମ୍ବନ୍ଧରେ ମୋ ମନରେ ଏମିତି କିଛି ଖରାପ ଧାରଣା ମଧ୍ୟ ଆଣିଦେଇ ପାରନ୍ତି. ସେଥିରେ ଅପଣମାନଙ୍କର ଯେପରି କ୍ଷତି ହେବ, ମୋ'ର ମଧ୍ୟ ସେହିପରି କ୍ଷତି ହେବ । ମୁଁ ସ୍ୱାଧୀନ ଭାବରେ ଆପଣଙ୍କ ଦେଶକୁ ଆସିଛି । ମୁଁ ସରକାରୀ ନୌକର ନୁହେଁ । ମୋତେ ସାହାଯ୍ୟ କରିବା ହେଉଛି ଆପଣମାନଙ୍କର କର୍ତ୍ତବ୍ୟ । ଦୋକାନି ଆଉ କିଛି ନ କହି ଘର ପଛ ଆଡ଼କୁ ଚାଲିଗଲା,

ଆଉ କିଛିକ୍ଷଣ ପରେ ଫେରି ଆସି କହିଲା, ସେମାନେ ରାତିରେ ବାହାରେ ଶୁଅନ୍ତି ସୁତରାଂ ମୋତେ ମଧ୍ୟ ବାହାରେ ଶୋଇବାକୁ ହେବ । ମୁଁ ତା’ କଥାରେ ହଁ ଭରିଲି । ଆରବ ଦୋକାନୀ ମୋତେ ଅତିଥି ବୋଲି ସ୍ୱୀକାର କଲା । ଆରବ ପ୍ରଥାରେ ଯଦି କାହାରିକୁ ଅତିଥି ବୋଲି ସ୍ୱୀକାର କରାଯାଏ, ତେବେ କରମର୍ଦ୍ଦନ ଏବଂ ଆଲିଙ୍ଗନ କରିବାକୁ ହୁଏ । ମୋ ସହିତ ମଧ୍ୟ ଆରବ ଦୋକାନୀ ତା’ କରିଥିଲେ ।

ସାଇକେଲଟାକୁ ନେଇ ମୁଁ ମଧ୍ୟ ଘର ପଛ ଆଡ଼କୁ ଗଲି । ସେ ଗୋଟିଏ ‘ବଦ୍‌ନା’ ( କଳୁଆ ) ରେ ପାଣି ଆଣି ଦେଲେ ହାତ ମୁହଁ ଧୋଇବା ପାଇଁ । ମୁଁ ଆମ ପ୍ରଥାନୁଯାୟୀ ହାତମୁହଁ ନ ଧୋଇ ଆରବ ପ୍ରଥା ପାଳନ କରିବାକୁ ବାଧ୍ୟ ହେଲି, କାରଣ ପାଣି ଥିଲା ଅତିକମ୍ । ଆଗରେ ହାତ ଧୋଇ ପକାଇଲି । କାରଣ ହାତରେ ଧୂଳି ଲାଗି ରହିଥିଲା । ତା’ ପରେ ନାକ, ମୁହଁ, ଆଖି, କାନ ଆଉ କାନ୍ଧଟା ପାଣିରେ ପୋଛି-ପକାଇ ମୁଣ୍ଡରେ ଟିକିଏ ପାଣିଦେଇ ଧୋଇ ପକାଇଲି । ଦେହଟା ବେଶ୍ ଆରାମ ଲାଗିଲା । ଅବଶିଷ୍ଟ ପାଣିରେ ଗୋଡ଼ ଦି’ଟା ଧୋଇ ପକାଇଲି । ଏଥର ଶରୀରର ଭିତରେ ଆଉ ବାହାରେ ଶାନ୍ତିର ଆସ୍ୱାଦ ଟିକିଏ ପାଇଲି ।

ଆରବ ଦେଶରେ ଖାଲି ପାଦରେ ରହିବା ବଡ଼ ନିନ୍ଦନୀୟ କଥା । ପୁଣି ମୋଜା ଓ ଜୋତା ପିନ୍ଧି ନେଲି । ଏଣେ ପୁଣି ଇଉରୋପୀୟ ସଭ୍ୟତା ଆସି ଦେଖା ଦେଇଛି । ପୁରୁଣା ପ୍ରଥା କେହି ପସନ୍ଦ କରନ୍ତି ନାହିଁ । ପୁରୁଣା ପ୍ରଥାକୁ ଅବହେଳା କରିବାର ଅନେକ କାରଣ ମଧ୍ୟ ଅଛି । ଗତ ପ୍ରଥମ ମହା ସମର ବେଳେ ଆମ ଦେଶରୁ ଅନେକ ସୈନ୍ୟ ଆରବ ଦେଶକୁ ଯାଇଥିଲେ । ତାଙ୍କର ଅସ୍ଥିର ବ୍ୟବହାରକୁ ଆରବଗଣ ନାନା କାରଣରୁ ପସନ୍ଦ କରୁ ନ ଥିଲେ, ଆଉ ଯେତେବେଳେ






କୌଣସି ଆରବ ଅନ୍ୟ ଆରବକୁ ତର୍କରେ ପରାସ୍ତ କରିପାରୁ ନ ଥିଲା, ସେତେବେଳେ ଭାରତବାସୀ ପ୍ରତି ତା'ର କଟାକ୍ଷ ପଡ଼ୁଥିଲା ।

ଖାନାକିନ୍ ଗୋଟିଏ ଛୋଟ ସହର । ତା'ର ଚାରି ପାଖରେ ଅନନ୍ତ ବାଲୁକା ପ୍ରାନ୍ତର ଧୂ ଧୂ କରୁଛି । ଖାନାକିନ୍‌ରେ ମିଠା ପାଣିର ଅଭାବ ନ ଥିବାରୁ ସହରଟି ଧୀରେ ଧୀରେ ବଢ଼ି ଉଠୁଥିଲା । ସହର ମଝିରେ ଅଳ୍ପ ଗୃହପାଖରେ ଖଜୁରି ବଗିଚା ଥିବାରୁ ଗରମର ଆଧିକ୍ୟ ମଧ୍ୟ ସେତେ ନ ଥିଲା ।

ଛୋଟ କାଫେଖାନା ଗୁଡ଼ିକ ଠିକ୍ ଇଉରୋପୀୟ ଧରଣରେ ସଜ୍ଜିତ । ଭିତରେ ଟେବୁଲ୍, ଚେୟାର ଆଉ କାନ୍ଥରେ ନାନା ପ୍ରକାର ଛବି ଟଙ୍ଗା ହୋଇଛି । ଛବିଗୁଡ଼ିକୁ ବେଶ୍ ନିରୀକ୍ଷଣ କରି ଦେଖିବାକୁ ଲାଗିଲି । ରାଜା ଫୈଜଲଙ୍କ ଛବି ବିଶିଷ୍ଟ ସ୍ଥାନରେ ରକ୍ଷିତ ଥିଲା । ତା'ପରେ ଇବନ୍ ସଉଦଙ୍କ ଛବି ମଧ୍ୟ ବିଶିଷ୍ଟତା ଅର୍ଜନ କରିଥିଲା । ଏହା ବ୍ୟତୀତ ଆଉ ଯେଉଁ ସବୁ ଛବି ଥିଲା ସେଗୁଡ଼ିକ ଇତଃସ୍ତତଃ ଟଙ୍ଗା ହୋଇଥିଲା । ପ୍ରେସିଡେଣ୍ଟ ହୁବର, ନେପୋଲିୟନ, ଜବାହରଲାଲ, ରେଜାଖାଁ ପହଲବୀ, ହିଟଲର, ଦୁଇଟି ଜାପାନୀ ବାଳିକା, ବମ୍ବେର କଟନ୍‌ମିଲର ମାଲିକ ଆଉ କେତେକ ମାସିକପତ୍ରିକା ଓ ସାପ୍ତାହିକ ପତ୍ରିକାରୁ କାଟି ଅନେକ ଛବି କାନ୍ଥରେ ମରା ହୋଇଥିଲା ।

କିଛି ସମୟ ପରେ କାଫେର ମାଲିକକୁ ଅନୁରୋଧ କଲି, ଯଦି ମୋ'ର ଗାଧୋଇବା ପାଇଁ କୌଣସି ବନ୍ଦୋବସ୍ତ କରି ପାରନ୍ତି ଉପକୃତ ହୁଅନ୍ତି । ଗାଧୋଇବା କଥା ଶୁଣି ତାଙ୍କ ମୁହଁ କଳା ପଡ଼ିଗଲା । ମୁଁ ତାଙ୍କ ମନର ଅବସ୍ଥା ବୁଝିପାରି କହିଲି "ନଟ୍ ବାଥ, ଅନ୍‌ଲି ଓ୍ୱାସ୍" । ଦୋକାନୀ ସଙ୍ଗେ ସଙ୍ଗେ କହିଲେ "ଓ ଇୟେସ, ଓ୍ୱାସ୍" ଆଉ ସଙ୍ଗେ ସଙ୍ଗେ ବଦନାଏ ପାଣି ଆଣି ଦେଲେ । ମୁଁ ଆରବୀ ପ୍ରଥାରେ

ଉଜୁ କଲି । ବୁଝିଲି, ପାଣି କଷ୍ଟରୁ ଆରବଗଣ ମୁଣ୍ଡର ବାଳ ସାନ ସାନ କରି କାଟନ୍ତି । ମୁଣ୍ଡରେ କମ୍ ବାଳଥିଲେ ଅଳ୍ପ ପାଣିରେ ମଧ୍ୟ ବେଶ୍ ଧୋଇ ହେବ । ଆମେ ଯେମିତି ପ୍ରଥମରେ ପାଦ ଧୋଉ ତା'ର କାରଣ ହେଲା ପାଣିର ପ୍ରାଚୁର୍ଯ୍ୟ, କିନ୍ତୁ ଯଦି ପାଣି କମ୍ ଥାଏ ତା'ହେଲେ କିଏ ଆଗ ପାଦ ଧୋଇବାକୁ ସାହସ କରିବ ? ମରୁଭୂମିରେ ସାଧାରଣତଃ ନାକ ଭିତରେ ଧୂଳି ଯାଇ ପଶେ । ତାକୁ ପରିଷ୍କାର ନ କଲେ ନାକ ଭିତରଟା ଭାରି ଖରାପ ଲାଗେ । କାନର ଅବସ୍ଥା ମଧ୍ୟ ତଦ୍ରୂପ । ନାକ, କାନ, ଆଖି, ମୁହଁ ଧୋଇ ତା'ପରେ ବେକ କାନ୍ଧ ପ୍ରଭୃତି ଧୋଇ ପକାଇଲେ ଯାଇ ଟିକିଏ ଶାନ୍ତି ଅସେ । ଆରବବାସୀ କାହିଁକି ଯେ ଉଜୁ କରନ୍ତି ତାହା ମରୁଭୂମିକୁ ନ ଗଲେ ଅନୁଭବ କରିବା ସମ୍ଭବପର ନୁହେଁ । ମୁଁ ଆରବରେ ଥିଲାବେଳେ ଫ୍ରୈଜକରି ମଧ୍ୟ ପାଣି ପିଇଛି । ଆମ ଦେଶରେ ବୋଧହୁଏ ଏ ଯାବତ୍ କେହି ପାଣି ଫ୍ରୈଜ କରି ପିଉନାହିଁ ।

ଉଜୁ କରି କାଫେରେ ଯାଇ ବସିଲି । ଜଣେ ଯୁବକ କପେ କାଫି ଆଣି ମୋ ଆଗରେ ରଖିଲା । ସୁସ୍ୱାଦୁ କଫି ମୋ ଜୀବନରେ ଏଠାରେ ପ୍ରଥମ ଖାଇବାକୁ ପାଇ ଖୁବ୍ ସୁଖୀ ହୋଇଥିଲି । ସେଥିରେ ଦୁଧ ଆଦୌ ନ ଥିଲା । ପତଳା ଖଜୁର ରସ ସହିତ କଫିର ଅର୍କ ଥିଲା । ଧୀରେ ଧୀରେ କଫି ପିଉ ପିଉ ଇରାକୀ ସିଗାରେଟ ମଧ୍ୟ ଟାଣିବାକୁ ଲାଗିଲି । ମୋ'ର-ପରି ଅନେକ ଭାରତବାସୀ ଏଠାକୁ ଆସିଥିଲେ ମଧ୍ୟ ଏଯାକେ ସାଇକେଲରେ କେହି ଆସି ନାହାନ୍ତି ବୋଲି ମୋ ପ୍ରତି ସେମାଙ୍କର ଏତେ ଆଦର । ଭୂପର୍ଯ୍ୟଟକଙ୍କୁ କିପରି ଭାବରେ ଆଦର ଯତ୍ନ କରିବାକୁ ହୁଏ, ଆରବଗଣ ଖୁବ୍ ଭଲଭାବରେ ଜାଣନ୍ତି ।

କାଫେର ମାଲିକ ମୋ ପାଖରେ ବସି କଫି ପିଉଥିଲେ । ମୁଁ ତାଙ୍କ ମନର ଶାନ୍ତ ଭାବ ଦେଖି କହିଲି—"ମହାଶୟ,



ଆମ ଦେଶର ନିୟମ ହେଉଛି ହାତଯୋଡ଼ ନମସ୍କାର କରିବା" । ଆଉ କପର ଭାବରେ ନମସ୍କାର କରିବାକୁ ହୁଏ ତା' ମଧ୍ୟ କରି ଦେଖାଇଲି । ପୁଣି କହିଲି—"ଏପରି ନମସ୍କାର କରିବାରୁ କେତେକ ଆରବ ମୋତେ ତାଙ୍କର ଯଥା ସର୍ବସ୍ୱ ଦେଇ ପକାଇଛନ୍ତି । ଅଚ୍ଛା, ଏପରି ନମସ୍କାର କରିବା କ'ଣ ଅନ୍ୟାୟ?" କାଫେର ମାଲିକ ହସି ହସି ଉତ୍ତର ଦେଲେ, "ଆମର ନିୟମ ହେଲା ଅଲ୍ଲା ବ୍ୟତୀତ ଅନ୍ୟ କାହାର ପାଖରେ ମୁଣ୍ଡ ନୁଆଁଇ ନମସ୍କାର କରନ୍ତୁ ନାହିଁ । କାହାର ପାଖରେ କିଛି ମାଗିଲେ ତାକୁ ହାତ ଯୋଡ଼ି ମାଗିବାକୁ ହୁଏ । ଯଦି କୌଣସି ଆରବ ହାତ-ଯୋଡ଼ି କାହାର ପାଖରୁ କିଛି ମାଗିବସେ ତାକୁ ତାହା ଦେବାକୁ ହୁଏ । ହାତଯୋଡ଼ି ଭିକ୍ଷା ମାଗିବା ଆଉ ଆପଣା ବେକରେ କୁରାଢ଼ି ହାଣିବା ଏକ କଥା ।" ଏକଥା ଶୁଣି ମୁଁ କୌଣସି ଆରବକୁ ନମସ୍କାର ତ ଦୂରର କଥା ଅଭିବାଦନ ମଧ୍ୟ କରିନାହିଁ ।

ମନର ସନ୍ଦେହଟା ଦୂର କରି ନୀରବରେ ବସି କଫି ପିଇଲି । କିଛି ସମୟ ପରେ କେତେଗୁଡ଼ଏ ରୋଟି ଆଉ ଖଣ୍ଡ କେତେ ମାଂସ ଆସିଲା, ଆଉ ପ୍ରତ୍ୟେକଙ୍କୁ ସେଥିରୁ ଦିଆହେଲା । ସଭିଏଁ ମନେ ମନେ କଣ ମନ୍ତ୍ର ଆବୃତ୍ତି କରି ଖାଇବାକୁ ଆରମ୍ଭ କଲେ । ମୁଁ କୌଣସି ମନ୍ତ୍ର ଆବୃତ୍ତି ନ କରି ଖାଇବାକୁ ବସିଗଲି । ମୋତେ ସେଥିପାଇଁ କେହି କିଛି କହି ନାହାନ୍ତି । ନୀରବରେ ସଭିଏଁ ଖାଇସାରି ହାତ ଧୋଇଲେ । କିନ୍ତୁ ଥରେ ଯାହା ଦିଆ ହୋଇଥିଲା ତା'ପରେ ଆଉ ଦିଆ ହେଲାନାହିଁ । ଏତେ କମ ଖାଇ ମୋ'ର ତ ତୃପ୍ତି ମୋଟେ ହେଲାନାହିଁ । ଏହି ପରିମାଣରେ ଖାଦ୍ୟର ପାଞ୍ଚଗୁଣ ଖାଇଥିଲେ ମଧ୍ୟ ବୋଧହୁଏ ମୋ'ର ଭୋକ ମେଣ୍ଟି ନ ଥାନ୍ତା । କିନ୍ତୁ କେହି ଆଉ ମାଗିଲେ ନାହିଁ ବୋଲି ମୁଁ ମଧ୍ୟ ମାଗିଲି ନାହିଁ । ଖାଇ ସାରି ସଭିଏ

ପେଟ ପୂରାଇ ପାଣି ପିଇଲେ । ମୁଁ ମଧ୍ୟ ସେଇଆ କଲି । ଆରବ ଦେଶରେ ଯେପରି ଖାଦ୍ୟର ମୂଲ୍ୟ ଅଛି, ସେହିପରି ପାଣିର ମଧ୍ୟ ମୂଲ୍ୟ ଅଛି । ଆମେ ଖାଇବା ଶେଷରେ ଯେପରି ପିଠା, ଦହି କିମ୍ବା ରାବିଡ଼ି ଖାଉ, ଆରବ ଦେଶରେ ତା'ପରି-ବର୍ତ୍ତେ ପାଣିର ବ୍ୟବସ୍ଥା ରହିଛି । ପେଟଭରି ପାଣି ପିଇବା ପରେ ପୁଣି କଫି ଆସିଲା; ସମସ୍ତେ ବସି କଫି ପିଇଲେ ମୁଁ ମଧ୍ୟ ତାଙ୍କର ନୀତି ଅନୁସରଣ କଲି ।

ଖିଆ ପିଆ ଶେଷକରି ସେମାନେ ନମାଜ ପଢ଼ିବାକୁ ଉଠିଗଲେ । ଯେଉଁମାନେ ନମାଜ ପଢ଼ିବାକୁ ଗଲେନାହିଁ ସେମାନେ ଘର ପଛଆଡ଼କୁ ଯାଇ ନିର୍ଦ୍ଦିଷ୍ଟ ବିଛଣାରେ ଶୋଇଲେ । ମୁଁ କୁଆଡ଼େ ନ ଯାଇ ବସି ରହିଲି । କିଛି ସମୟ ପରେ ଦୋକାନୀ କହିଲା—ଆପଣଙ୍କର ଦେଶରୁ ଯେଉଁ ସବୁ ଲୋକ ଏଠାକୁ ଚାକିରୀ କରିବାକୁ ଆସନ୍ତି ସେମାନେ କିପରି ଲୋକ ?

ଏଥର ବୁଝିବାକୁ ଆଉ ବାକି ରହିଲା ନାହିଁ । ଆମ-ଦେଶର ଯେଉଁସବୁ ଲୋକ ଇରାକ୍‌କୁ ଚାକିରୀ କରିବାକୁ ଯାଇ-ଛନ୍ତି—ସେମାନଙ୍କ ପ୍ରତି ଆରବଗଣ ଆଦୌ ସନ୍ତୁଷ୍ଟ ନୁହନ୍ତି । ଆମ ଦେଶର ଲୋକ ଚାକିରୀ ପାଇବା ପରେ ସେ ଯେ ଜଣେ ବେତନଭୋଗୀ ଚାକର ଏ କଥାଟି ଭୁଲିଯାଇ ଅପର ଲୋକ ଉପରେ ନିର୍ଯ୍ୟାତନ ଆରମ୍ଭ କରିଦିଏ । ଇରାକ୍‌କୁ ଯେଉଁମାନେ ଯାଉଛନ୍ତି ତାଙ୍କ ମଧ୍ୟରେ ସେହିପରି ଲୋକଙ୍କର ଅଭାବ ନାହିଁ ବୋଲି ଏଇ କଥାଟା ହଠାତ୍ ଉଠିଲା । ମୁଁ ଅତି ନମ୍ର ଭାବରେ ଦୋକାନୀକୁ କହିଲି—କ୍ଷମାକରିବେ ବନ୍ଧୁ, ଆପଣଙ୍କର ଜାଣିବା ଉଚିତ ଯେ ଆମେ ସବୁ ପରାଧୀନ । ପରାଧୀନ ଜାତିର ଅନେକ ଦୋଷ । ଆମେ ଯଦି ସ୍ୱାଧୀନ ହୋଇ ଥାଆନ୍ତୁ ତେବେ ଆପଣ ଏପରି ପ୍ରଶ୍ନ କରିବାକୁ ସାହସୀ ହୁଅନ୍ତେ ନାହିଁ ।

ଦୋକାନୀ ମୋ କଥା ଶୁଣି ମୋତେ କୁଣ୍ଢାଇ ପକାଇ କହିଲେ,– ଆଜି ମୁଁ ଜଣେ ଖାଣ୍ଟି ହିନ୍ଦକୁ ଅତିଥି ରୂପେ ପାଇ ଭାଗ୍ୟବାନ !

## ବାଗ୍‌ଦାଦ୍ ପଥେ

ପର ଦିନ ବସା ଛାଡ଼ିବା ଅଗରୁ ବାଗ୍‌ଦାଦ୍ ରାସ୍ତା ସମ୍ବନ୍ଧରେ ଅନେକ ଖବର ବୁଝିଥିଲି । ଆରବଗଣ ଆମ ଭଳି "ଯାଆନ୍ତୁ, ଯାଆନ୍ତୁ" କହନ୍ତି ନାହିଁ । ତାଙ୍କର କଥାର ମୂଲ୍ୟ ଅଛି । ଆଉ ଆମ ଦେଶରେ ଯେଉଁମାନେ କହନ୍ତି "ଏଇ ଅଗରେ" ତାଙ୍କ ପରି ଦାୟିତ୍ୱ ଜ୍ଞାନହୀନ ନୁହନ୍ତି । ମୋ ବାଟ ସମ୍ବନ୍ଧରେ ନିର୍ଭୁଲ ସଂବାଦ ଜାଣିବା ପାଇଁ ଗୋଟିଏ ଛୋଟ ସଭା ବସିଗଲା । ଅନେକେ ଉଟର ରାସ୍ତା ଜାଣନ୍ତି କିନ୍ତୁ ମୋଟର ରାସ୍ତାର ଖବର ଅତି ଅଳ୍ପ ସଂଖ୍ୟକ ଆରବ ଜାଣନ୍ତି । ତାଙ୍କ-ଭିତରୁ ଜଣେ କହିଲେ 'ବାଟ ଉପରେ ଅନେକ ସମୟରେ ଏତେ ବାଲି ଆସି ଜମାହୁଏ ଯେ ସେଇ ବାଲି ଉପରେ ମୋଟର ଚକ ବସିଯାଏ କିମ୍ବା ଖସିଡ଼ି ଯାଏ, ସାଇକେଲର ମଧ୍ୟ ସେଇ ଦୁର୍ଦ୍ଦଶା ହେବାର ସମ୍ଭାବନା ଅଛି ।'

କଥା ପ୍ରସଙ୍ଗରେ ମୁଁ ପଚାରିଲି 'ରାସ୍ତାରେ ବେଦୁଇନ ଡକାଏତଙ୍କର ଆକ୍ରମଣର ସମ୍ଭାବନା ଅଛି କି ?' ମୋ କଥା ଶୁଣି ଅନେକ ସ୍ତମ୍ଭିତ ହୋଇଗଲେ । ଜଣେ କହିଲା, 'ପର୍ଯ୍ୟଟକ ! ମରଣକୁ ଭୟ କରୁଛ ତମେ ? କୌଣସି ପର୍ଯ୍ୟଟକ ମରଣକୁ ଭୟ କରେ ନାହିଁ ।' କଥାଟା ଶୁଣି ଖୁବ୍ ଦୁଃଖ ଲାଗିଲା । କେତେ ଇଉରୋପୀୟ ପର୍ଯ୍ୟଟକ ଏକା ଏକା ଆରବ ଭ୍ରମଣ କରିଛନ୍ତି, କେତେ ତା' ମଧ୍ୟରୁ ମୃତ୍ୟୁକୁ ସାନନ୍ଦରେ ଆଲିଙ୍ଗନ କରିଛନ୍ତି ତା'ର ଇୟତ୍ତା ନାହିଁ—ଆଉ ମୁଁ ଭୟ କରୁଛି,–

ମରଣକୁ ! କଥାଟା ଭାବି ଭାବି ଖୁବ୍ ଦୁଃଖ ଆସିଲା ମନରେ । ଆଉ ଛୁଡ଼ା ନ ହୋଇ ଗୋଟିଏ ହାତ ଉଠାଇ ବିଦାୟ ସମ୍ଭାଷଣ ଜଣାଇଲି, ଆଉ ଦୋକାନୀକୁ ଅଲିଙ୍ଗନ କରି ରାସ୍ତା ଉପରକୁ ବାହାରି ପଡ଼ିଲି ।

ଆରବ୍ୟ ରଜନୀ ଏଠାରେ ନାହିଁ—ଏଠାରେ ବାସ୍ତବ ଜଗତର ଆରବ୍ୟ ହାବା । ରାସ୍ତା ଖୁବ୍ ଭଲ । ଯେତେଦୂର ଦୃଷ୍ଟି ଯାଉଛି କେବଳ ଧୂ-ଧୂ ମରୁ ପ୍ରାନ୍ତର । ଇଚ୍ଛା ହେଉଥିଲା ଗାଁକୁ ଫେରିଯାଏ । ଗାଁ ଟା ଯେପରି ମୋ'ର ଜନ୍ମଭୂମି, ପଛରୁ ହାତଠାରି ଡାକୁଛି । ରାସ୍ତାରେ ଜଣେ ବୋଲି ବାଟେ ଇ ନାହିଁ କି ଗୋଟିଏ ବୋଲି ଉଟ ଦେଖିଲି ନାହିଁ ! ସେତେବେଳେ ମନେ ହେଉଥିଲା ଯଦି ଗୋଟିଏ ବାଘ ହେଲେ ଦେଖନ୍ତି ତେବେ ସୁଦ୍ଧା ଭଲ ହୁଅନ୍ତା, ମୁଁ ଟିକିଏ ଶାନ୍ତି ପାଆନ୍ତି । ମୁଁ ଜୀବ—ସୁତରାଂ ଜୀବର ଦର୍ଶନ ମୋ'ର ଏକାନ୍ତ ଦରକାର, ସେ ଶତ୍ରୁ ହେଉ ବା ମିତ୍ର ହେଉ । କିନ୍ତୁ ଜୀବ କାହିଁ ନା ଜଳ କାହିଁ ? ପାଣି ବୋତଲ ଆଉ କେଟଲିରୁ ପାଣି ପଡ଼ୁଛି କି ନାହିଁ ବାରମ୍ବାର ପରୀକ୍ଷା କରି ଦେଖୁଥିଲି । ଏଇଟା ଯେପରି ମୋ'ର ରୋଗ ହୋଇ ପଡ଼ିଲା । କେବଳ ପାଣି କଥା ହିଁ ମନେ ପଡ଼ିଲା । ଦୁଇ ପାଖରେ କେବଳ ରାଶି ରାଶି ବାଲି କଣା ଉପରେ ଆକାଶ ଆଡ଼କୁ ମଧ୍ୟ ଚାହିଁ ହେଉ ନ ଥିଲା । ନିର୍ମଳ ସୁନୀଳ ଆକାଶ । ମୋ'ର ମନେ ହେଉଥିଲା ମୁଁ ଯେପରି ଆକାଶର ଶେଷ ସୀମା ପର୍ଯ୍ୟନ୍ତ ଦେଖି ପାରୁଛି । ଗଭୀର ସମୁଦ୍ରରେ ଯେଉଁଠି ଖୁବ୍ ସ୍ୱଚ୍ଛ ଆଉ ଗାଢ଼ ନୀଳ ଜଳରାଶି ଦେଖିବାକୁ ମିଳେ ସେଇଠି ଯେପରି ଅନେକ ଦୂର ପର୍ଯ୍ୟନ୍ତ ପାଣି ଭିତରଟା ପରିଷ୍କାର ଦେଖିହୁଏ, ସେଇପରି ଆରବ ଦେଶର ଆକାଶର ଶେଷ ସୀମା ପର୍ଯ୍ୟନ୍ତ ଦେଖାଯାଇ ପାରେ । ଏଇ ସବୁ କଥା ଯେପରି ଭାବୁଥିଲି,—ସେଇ ଯେଉଁ ଗାଁଟି







ପଛରେ ଅଦୃଶ୍ୟ ହୋଇଗଲା, କୁଆଡ଼େ ଗଲା । ଏ କଥାଟି ମଧ୍ୟ ଠିକ୍ ସେଇପରି ଭାବୁଥିଲି । କୁକ୍ ଯେପରି ପୃଥିବୀର ଗୋଲତ୍ୱ ସାଗର ବକ୍ଷରେ ଜାହାଜର ମାସ୍ତୁଲର ଅଗ୍ରଭାଗ ଦେଖି ଠିକ୍ କରିଥିଲେ, ଆମ ଦେଶର ଲୋକେ ଆରବର ଖଜୁରି ଗଛ ଅଗରୁ ଦେଖି କାହିଁକି ନ କହିବେ—ପୃଥିବୀ ଗୋଲ ? ପୂର୍ବ ଦେଶର ପୁରାତନ ଲୋକଙ୍କ ପ୍ରତି ମୋ'ର କାହିଁକି ରାଗ ଆସିଲା ।

ରାଗ ତ ହେବାର କଥା ! ଆମ ଦେଶର ଲୋକଙ୍କର ସାଧାରଣ ବୁଦ୍ଧିର ଅଭାବ ଥିଲା କି ନାହିଁ ସେଇ କଥା ଭାବିବାକୁ ଲାଗିଲି । କେବଳ ସେଇ କଥା ଭାବି ଭାବି ସାଇକେଲ ଚଲାଉଥିଲି । କାହିଁକି ଯେ ଏଇ ସବୁ ଉଦ୍ଭଟ ଚିନ୍ତାରେ ବ୍ୟସ୍ତ ଥିଲି କେହି ବୋଧହୁଏ ବୁଝିପାରିବେ ନାହିଁ । ଆଗରେ ବାଲି, ପଛରେ ବାଲି ଆଉ ଉପରେ ଗାଢ଼ ନୀଳ ଆକାଶ । ଏଇ ପରିବେଷ୍ଟନୀ ମଧ୍ୟରେ ଚିନ୍ତା ବିନା ଆଉ କ'ଣ କରିହେବ ? ଯାହାକୁ ଆମେ ମନ କହୁ ସେ ତ ନିକମା ହୋଇ ବସି ରହିବାକୁ ଚାହେଁ ନାହିଁ, ଆଉ ମୁଁ ମଧ୍ୟ ବେଙ୍ଗ ନୁହେଁ ଯେ ଊର୍ଦ୍ଧ୍ୱରେତା ହୋଇ ସୁଧା ପାନ କରନ୍ତି ।

ଏଇ ଯେ ଦୂରରେ ଗୋଟିଏ ଖଜୁରି ଗଛର ଅଗ ଦେଖାଯାଉଛି । ନିଶ୍ଚୟ ସେଇଠି ଗାଁ ଗଣ୍ଡା କିଛି ଅଛି ! ମୁଁ ବର୍ତ୍ତମାନ କଲମ୍ବସ୍, ସମୁଦ୍ର ଯାତ୍ରା କରୁଛି ହିନ୍ଦୁସ୍ଥାନ ଆବିଷ୍କାର କରିବାକୁ । ମୋ'ର ଖୁବ୍ ଆନନ୍ଦ ଏଇ ଯେ ଦେଖାଯାଉଛି ଖଜୁରି ଗଛର ପତ୍ର—ଧୀରେ ଧୀରେ ଖଜୁରି ଫଳର ଗୁଚ୍ଛ । କେଡ଼େ ମିଠା ସେ ଫଳ । ସେ ଫଳ ପୁଣି ଜୀବନ ରକ୍ଷାରେ ସାହାଯ୍ୟ କରେ । ଖଜୁରି ଗଛ ତଳରେ ନିଶ୍ଚୟ କୂଅ ଅଛି । ସେ କୂଅର ପାଣି ନିଶ୍ଚୟ ମିଠା, ସ୍ୱଚ୍ଛ ସୁନ୍ଦର, ଜୀବନ ଧାରାରେ ଭରପୂର । ସେଇ ପାଣି ପିଇ ମୁଁ ନବଜୀବନ

ଯେଉ ପାଇବ । ସମ୍ମୁଖରେ ଗାଁ, କେଡ଼େ ସୁନ୍ଦର ସେଇ ଗାଁ । ଗାଁରେ ଘର । ଘରରେ ଲୋକ ଅଛନ୍ତି । ସେଇଠି ନିଶ୍ଚୟ ଖାଇବା ଦୋକାନ ଅଛି—ସେଠାରୁ କିଛି କିଣି ଖାଇବ । ଘରେ ଯାଇ ବସିବ । ଘର ମଝିରେ ନିଶ୍ଚୟ ଶୀତଳ ପବନ ବହୁଥିବ, ତା'ର ପରଶ ଲାଗି ଦେହ ମୋ'ର ଥଣ୍ଡା ହେବ, ଆରାମ ଲାଗିବ, ଶାନ୍ତି ପାଇବ । ଏଇ ଯେ ମୋଲ୍ଲା ଭଗବାନଙ୍କ ଗୁଣ କୀର୍ତ୍ତନ କରୁଛି, ନିଶ୍ଚୟ ଭଗବାନ ଅଛନ୍ତି । ପାଣି ସେ ସୃଷ୍ଟି କରିଛନ୍ତି, ରୋଈ ତାଙ୍କର ସୃଷ୍ଟି, ଗାଁ ଆଉ ଖଜୁର ଗଛ ମଧ୍ୟ ତାଙ୍କର ସୃଷ୍ଟି । ଏଇପରି ଚିନ୍ତାଧାରା ଭିତରେ ଗାଁରେ ପହଞ୍ଚିଲି । ଉଦ୍‌ଗ୍ରୀବତା ଯେ କ'ଣ ତାହା ଅନୁଭବ ନ କଲେ ଭାଷାରେ ବୁଝାଇ ହୁଏ ନାହିଁ । କଣ୍ଟା ସାହାଯ୍ୟରେ କଣ୍ଟା ବାହାର କରିବାକୁ ପଡ଼େ । କଥା ଭିତର ଦେଇ କଥା ଲୁହାଇବାକୁ ପଡ଼େ, ଭାବଦେଇ ଭାବକୁ ଦୂର କରିବାକୁ ପଡ଼େ । ମନେ ପଡ଼ିଲା ତପୋବନର ଭୁବନ ସନ୍ନ୍ୟାସୀର କଥା । ତପୋବନ ପରେ ଯେତେବେଳେ ଭୁବନ ସନ୍ନ୍ୟାସୀ ଭାତ ରାନ୍ଧୁଥିଲା ଆଉ ତାର ମନ 'ଏଇ ଖାଇବ' 'ଏଇ ଖାଇବ' ହେଉଥିଲା, ସେତେବେଳେ ବିକାରର ତାଡ଼ନାରେ ସେ ଭାତ ହାଣ୍ଡିକୁ ପଦାଘାତରେ ଫିଙ୍ଗି ଦେଇଥିଲା । ମୁଁ ମଧ୍ୟ ମନର ଦୁର୍ବଳତାରେ ଭଗବାନ ଆଉ ପ୍ରାକୃତିକ ସୌନ୍ଦର୍ଯ୍ୟକୁ ପଦାଘାତରେ ଦୂରକରି ଗର ମଝିରେ ବସି ପଡ଼ିଲି । କାହିଁ ତୋ'ର ଭଗବାନ ? ଏଠାରେ ଏଇ, ମୋ'ର ପ୍ରତି ମୋ'ର ଆଦେଶ ହୋଇଥିଲା । ଗାଁକୁ ଯିବ ନାହିଁ । ଛାତ ଭିତରଟା ଥର ଥର କରି କମ୍ପିଉଠିଲା ଯେତେ ଅଧା ଦେହ ପିଞ୍ଜରା ଛାଡ଼ି ପ୍ରାଣପକ୍ଷୀ ଉଡ଼ି ଚାଲିଯିବ ।

ଖରାରେ ଦେହ ଜଳି ଯାଉଥିଲା, ଦେହ ହାଡ଼ରେ ତ... ଡ଼ାରେ ଫୋଟକା ପଡ଼ିବା ଭଳି ହୋଇ ଯାଇଥିଲା । ... ଉପରେ ଥିଲାବେଳେ ଟିକିଏ ହେଲେ ପବନ ଲାଗୁ...

ସେତକ ହଠାତ୍ ବନ୍ଦହୋଇ ଯିବାରୁ ଅନ୍ଧର ଗରମ ଲାଗୁଥିଲା । ମନର ଉତ୍କଣ୍ଠା ଭାବ କମିଗଲା; ମନ ଶେଷରେ ହାରମାନିଲା, ଆଉ ମୁଁ ଧୀରେ ଧୀରେ ଉଠି ଗାଁ ଭିତରେ ପଶୁଥିଲି । ଗାଁ ଖଣ୍ଡିକ ନୀରବ ନିସ୍ତବ୍ଧ । କେତେବେଳେ କେମିତି ଜଣେ ଜଣେ ଲୋକ ଗଧଉପରେ ବସି କମ୍ବା ଗଧ ଗୋଟ ଉଡ଼ ନେଇ ଯାଉଥାନ୍ତି । ତାହାଙ୍କୁ କୌଣସି ପ୍ରକାରେ ଅଭିନନ୍ଦନ କଲିନାହିଁ, କେବଳ ଦେଖିବାକୁ ଲାଗିଲି ଗାଁର କେଉଁଠି ସହରର ଗନ୍ଧ ଲାଗିଛି କି ନାହିଁ ?

ଆଗରେ ଗୋଟିଏ ବହିର ଦୋକାନ ଦେଖି ମନଟା ଆନନ୍ଦରେ ଭରି ଉଠିଲା । ସେଠାରେ ଆରବୀ ଭାଷାରେ କେତେକ ସମ୍ବାଦପତ୍ର ଥିଲା । ଗୋଟିଏ ଦୁଇଟି ଫାର୍ସୀ ଭାଷାର ବହି ମଧ୍ୟ ଥିଲା । ଦୋକାନୀ ମୋ ସହିତ ପାର୍ସୀ ଭାଷାରେ କଥା କହିଲା । ମୁଁ ପଚାରିଲି—"ଉର୍ଦ୍ଦୁ ଫାମିଦି" ଅର୍ଥାତ୍ ହିନ୍ଦୁସ୍ଥାନୀ ବୁଝିପାର କି ନାହିଁ ? ଦୋକାନୀ କହିଲା "ନାଇ", ମୁଁ ପୁଣି କହିଲି—" ମନ୍ ଇରାନୀ ଫମିଦମ୍" ଅର୍ଥାତ୍ ମୁଁ ଇରାନୀ ଭାଷା ଜାଣେ ।" ଇରାନରେ ଥିବା ବେଳେ ନିଜର ଆବଶ୍ୟକ ଅନୁଯାୟୀ କେତେକ ଇରାନୀ କଥା ମୁଁ ଶିଖି ନେଇ ଥିଲି । ସେଇଠୁ ଯେଉଁ 'ଦୁ' ଚାରି କଥା ମନେ ଥିଲା ତାକୁ ଘେନି କଥା ଆରମ୍ଭ କରିଦେଲି । ପାନ୍ଥର ଦରକାର କ'ଣ ? ସର୍ବପ୍ରଥମ ବିଶ୍ରାମ ! ଲୋକଟି ତାହା ବୁଝିପାରି ନିକଟରେ ଗୋଟିଏ ସରାଇ ଦେଖାଇ କହିଲା—"ପାକଣ୍ଡ ଇସି ରୁଇ" ଅର୍ଥାତ୍ ଏଇ ରାସ୍ତାରେ ଚାଲି ଯାଆନ୍ତୁ । କିଛିଦୂର ଆଗକୁ ଯାଇ ଦେଖିଲି ଗୋଟିଏ ମାଟିଘରରେ କେତେଗୁଡ଼ିଏ ଲୋକ ବସି ରହିଛନ୍ତି । ଇଂରାଜୀରେ ପଚାରିଲି—ଏଇଠା କଣ ସରାଇ ? ଜଣେ କିଏ ଉତ୍ତର ଦେଲା—ହଁ ଏଇଠା ସରାଇ, ଯଦି ରହିବାକୁ ଚାହାନ୍ତି—ଆସନ୍ତୁ । ମୁଁ ସାଇକେଲଟା ବାହାରେ ରଖି ଯେଉଁ ଲୋକଟି କଥା କହୁଥିଲା



ତା'ର ଗାଲିଚାରେ ଯାଇ ବସିଲି ଆଉ କେଉଁଠି ପାଣି ମିଳିବ ପଚାରିଲି । ଲୋକଟି ସଙ୍ଗେ ସଙ୍ଗେ ଆଉ ଗୋଟିଏ ଲୋକକୁ ପାଣି ଆଣିବାକୁ କହିଲା । ମୁଁ ଆରାମରେ ବସି ତାର ଅପେକ୍ଷା କରିବାକୁ ଲାଗିଲି । ପାଣି ଆସିଲା ପରେ ଭଲ ଭାବରେ ଓଜୁ କରି ଗାଲିଚା ଉପରେ ବସି ଗୋଟିଏ ସାନକପ୍‌ରେ କପେ ପାଣି ଧୀରେ ଧୀରେ ଚୁମୁକି ପିଇ ଶୋଇ ପଡ଼ିଲି । ଅକ୍ଲାନ୍ତ ପରିଶ୍ରମ ପରେ ନିଦ ଆସିଗଲା, ମୁଁ ଗରମକୁ ଫାଙ୍କିଦେଇ ଶୋଇପଡ଼ିଲି ।

ନିଦରୁ ଉଠି ପୁଣି ପାଣି ମଗାଇ ଓଜୁକରି କାଫି ଆଣି-ବାକୁ କହିଲି । ପରିଚିତ ଲୋକଟି କାଫି ଆଣିଦେଲେ ମୋତେ, ସେଥିପାଇଁ ଗୋଟିଏ ପଇସା ବି ଦେବାକୁ ପଡ଼ିଲା ନାହିଁ । ତା'ପରେ ଉଭୟେ ମିଶି ଖାଇବାର ମଗାଇ ପେଟଭରି ଖାଇଲୁ, ଖାଇବାଟା ବଡ଼ ଆରାମରେ ହେଲା । ଦୁମ୍ବା ମାଂସର କବାବ୍ ଆଉ ରୋଟି । ଖାଇସାରି କେତୋଟି ଫଳ ମଧ୍ୟ ଖାଇଲି । ମୋ'ର ଏତେ ଖାଇବା ଦେଖି ଭଦ୍ରଲୋକ ଆଶ୍ଚର୍ଯ୍ୟ ହେଲେ । ମୋତେ ପଚାରି ବସିଲେ, ସ୍ତ୍ରୀ ଠାରୁ ବେଶୀ ଖାଇ ପାରିବି କି ବୋଲି ! ମୁଁ କହିଲି, "ନିଶ୍ଚୟ ବନ୍ଧୁ ।" ଆରବଗଣ ଖୁବ୍ କମ ଖାଆନ୍ତି ବୋଲି ମୋ'ର ଖାଇବା ଦେଖି ଭଦ୍ରଲୋକ ଆଶ୍ଚର୍ଯ୍ୟ ହୋଇଥିଲେ । ଇଂରାଜୀ ଜାଣିଥିବା ଜଣେ ଆରବସଙ୍ଗୀ ପାଇ ମୋ ମନରେ ବଡ଼ ଆନନ୍ଦ ହୋଇଥିଲା । ପଚାରି ବୁଝିଲି ଯେ ସେ ଏଇ ଗାଁରେ ଆଉ ତିନିଦିନ ରହି ପରେ ବାଗ୍‌ଦାଦ୍ ଯିବେ । ବାଗ୍‌ଦାଦ୍ ସିଧା ନ ଯାଇ ଗାଁ ଗାଁ ବୁଲିଯିବେ । ମୁଁ ତାଙ୍କର ସାଙ୍ଗ ଧରିବାକୁ କହିବାରୁ ସେ କହିଲେ ମୋ ସାଙ୍ଗରେ ଯଦି ବୁଲନ୍ତି ତା ହେଲେ ଏଠାରୁ ପାଞ୍ଚ ମାଇଲ ଦୂରରେ ଗୋଟିଏ ରେଲଷ୍ଟେସନ ଅଛି । ସେଠାକୁ ଯାଇ ସାଇକେଲଟା ବାଗ୍‌ଦାଦ୍‌କୁ ବୁକ୍ କରିଦିଅନ୍ତୁ, ଆଉ ମୋ ସହିତ ଉଠକରି ଯାଇ ପାରନ୍ତି । ମୁଁ ତାଙ୍କ କଥାରେ ରାଜି ହେଲି । କିନ୍ତୁ ଅସଲ କଥା

ଏତେ ଟଙ୍କା ପାଉଛି କୁଆଡ଼ୁ ? ଆରବ ଭଦ୍ରଲୋକଙ୍କ କାର୍ପେଟ ଆଉ ଜାପାନୀ ଖେଳଣାର ବ୍ୟବସାୟ କରନ୍ତି । ଯେମିତି ମୁଁ ତାଙ୍କ କଥାରେ ରାଜି ହୋଇଛି ସଙ୍ଗେ ସଙ୍ଗେ ସେ 'ବୟୁକ୍' କହି ମୋ ପାଇଁ ଗୋଟିଏ ନୂଆ କାର୍ପେଟ ଖୋଲି ଦେବାକୁ କହିଲେ ଆଉ ବୟୁ କାର୍ପେଟ ଖୋଲି ତା ପରେ ମୋ'ର ବିଛଣା କରିଦେଲା । ଭଦ୍ରଲୋକ କହିଲେ, "ଏଥର ବନ୍ଧୁ, ଆପଣ ମୋ'ର ଅତିଥି, ଆପଣଙ୍କ ନାଁ ଟା ତ ଜାଣିପାରିଲି ନାହିଁ ।" ମୁଁ କହିଲି—ମୋ ନା ରାମନାଥ ବିନ୍ ବିରଜାନାଥ, ଜାତିରେ ହିନ୍ଦୁ, ଧର୍ମରେ ବିରଜାନାଥ ହିନ୍ଦୁ, ସୁତରାଂ ମୁଁ ମଧ୍ୟ ସେଇୟା । ତା'ପରେ ମୁଁ ପଚାରି ବସିଲି—ଆପଣଙ୍କ ନାଁ ଟା ମୁଁ ଜାଣିପାରେ କି ? ସେ କହିଲେ, "ମୋ'ର ନାମ ଅବଦୁଲ୍ଲା ବିନ୍ ହାନାଫ୍ । ହାନାଫ୍ ଧର୍ମରେ ଇସ୍ଲାମ୍, ସୁତରାଂ ମୁଁ ମଧ୍ୟ ଇସ୍ଲାମ୍।" ସୁତରାଂ ଆମେ ଉଭୟେ ପିତୃଧର୍ମର ଅନୁଗାମୀ । ବାପ ଯଦି ଚୋର ହୋଇଥାନ୍ତେ ଆମେ ମଧ୍ୟ ଚୋର୍ ହୁଅନ୍ତୁ । ଅବଶ୍ୟ କଥାଟା ଖୋଲିକରି କହି ନ ଥିଲି । ମୋ'ର ବିଛଣା ହୋଇଯିବା ପରେ ବିଛଣାରେ ବସି ବସି ସିଗାରେଟ ଟାଣିବାରେ ଲାଗିଲି ଆଉ ଚିନ୍ତା କରି ବସିଲି, ସନ୍ଧ୍ୟାକୁ ନିଶ୍ଚୟ ଗାଁ'ଟା ଥରେ ବୁଲି ଆସିବାକୁ ହେବ । କିନ୍ତୁ ଆରବ ଘରେ ଅତିଥି ହେବାଟା ଏକ ରହସ୍ୟମୟ ବ୍ୟାପାର । କୁଆଡ଼େ ଯିବାକୁ ହେଲେ କହି ଯିବାକୁ ହେବ । ସଲାମ୍ ଅଲେକମର ବ୍ୟବହାର ବହୁତ କମ୍ ଏଠାରେ । ଯେତେବେଳେ ବିଦାୟ ନେଇ ଯିବାକୁ ହୁଏ—"ଯାଉଛି, ପୁଣି ଦେଖାହେବ" କହିଲେ ହିଁ ହେଲା । ଆଉ ଯେ ବିଦାୟ ଦିଅନ୍ତି, କହନ୍ତି ନିର୍ବିଘ୍ନରେ ଫେରିଆସ । ମୋ'ର ଏ ସବୁକଥା ଆଗେ ମନେ ରହେ ନାହିଁ ବୋଲି ମୁଁ କିଛି କହି ନ ଥିଲି ।

ସନ୍ଧ୍ୟାରେ ଅବଦୁଲ୍ଲା ବିନ୍ ହାନାଫ୍ ମୋତେ ସରାଇଖାନାର ସମସ୍ତଙ୍କ ସହିତ ପରିଚୟ କରାଇ ଦେଲା । ଆଳାପ ପରିଚୟ

ହେଲାପରେ ସେମାନେ ମୋତେ ହିନ୍ଦୁ ଧର୍ମ କ'ଣ ପଚାରି ବସିଲେ । ମୁଁ ଯାହା କହୁଥିଲି ଅବଦୁଲ୍ଲା ତାଙ୍କୁ ତାଙ୍କ ଭାଷାରେ ବୁଝାଇ ଦେଲେ । ମୁଁ କହିଥିଲି, ହିନ୍ଦୁଧର୍ମ ଭିତରେ ଏକେଶ୍ୱର-ବାଦ, ପୌତ୍ତଳିକତା ଅଉ ନାସ୍ତିକତା ସବୁ ଅଛି । ପ୍ରତ୍ୟେକେ ଇଚ୍ଛାନୁଯାୟୀ ଭଗବାନଙ୍କର ସ୍ୱରୂପ ନିର୍ଣ୍ଣୟ କରି ପାରିବେ । ଏଇ ହେଲା ହିନ୍ଦୁଧର୍ମର ମୋଟ କଥା । କିନ୍ତୁ ମୁଁ ଏସବୁର ଧାର ଧାରେ ନାହିଁ । ସୁତରାଂ ମୋ'ର ଅପ୍ରିୟ ସତ୍ୟ ଶୁଣି କେହି ଯେପରି ରାଗ ନ କରନ୍ତି । ଧର୍ମ ସମ୍ପର୍କରେ କାହିଁକି ଯେଉଁ ସମ୍ପର୍କରେ ହେଉ ଆରବଙ୍କ ପାଖରେ କଥା କହିଲା ବେଳକୁ ଭୂମିକାର ଦରକାର ହୁଏ ନାହିଁ, ସରଳ ରାସ୍ତାରେ ତାଙ୍କୁ ବୁଝାଇ ପାରିଲେ ହେଲା । ମୋ କଥା ଶୁଣି ଅବଦୁଲ୍ଲା ମୋତେ ଫିଲୋସଫାର ( ଦାର୍ଶନିକ ) ବୋଲି ନାମ ଦେଇଥିଲେ ।

ଆରବ ଗାଁ ଟିରେ ତିନୋଟି ଦିନ ବେଶ୍ ଆରାମରେ କଟି ଯାଇଥିଲା । ଗାଁ ର ଲୋକମାନେ ରାଜନୀତି ସମ୍ବନ୍ଧରେ ଚର୍ଚ୍ଚା କରିବାକୁ ଭଲ ପାନ୍ତି । ଯା'ର ଫଳ ମଧ୍ୟ ଭଲ ହୁଏ । ନିହାତି ଅନାଡ଼ିଟାଏ ମଧ୍ୟ ନାନା କଥା ଅନ୍ୟ ଲୋକପାଖରୁ ଶୁଣି ଅନେକ ଜ୍ଞାନ ଲଭ କରେ । ଆମ୍ଭମାନଙ୍କର ପରାଧୀନତା ଆମେ ସବୁ-ବେଳେ ଅନୁଭବ କରୁନାହିଁ, ଅନେକ ସମୟରେ ତାହା ଏକାବେଳେକେ ଭୁଲିଯାଉଁ, କିନ୍ତୁ ଆରବଗଣ ତାଙ୍କର ସ୍ୱାଧୀନତା ସମ୍ବନ୍ଧରେ ସବୁବେଳେ ସଚେତନ । ଆରବଗଣ ଯେ ପରାଧୀନ ଏକଥାଟି ପ୍ରତ୍ୟେକେ ଜାଣନ୍ତି ଏବଂ ତା' ଅନୁଭବ ମଧ୍ୟ କରନ୍ତି ।

ଆରବଗଣ ଯାଯାବର ଜାତି । ଗୋଟିଏ ସ୍ଥାନରେ ବେଶୀ-ଦିନ ରହିବାକୁ ଭଲ ପାଆନ୍ତି ନାହିଁ । ଆରବଗଣ ଯେ ସ୍ୱେଚ୍ଛାରେ ଯାଯାବର ସାଜିଛନ୍ତି, ତା ନୁହେ—ପ୍ରାକୃତିକ ବେଷ୍ଟନୀ ହେଉଛି ତା'ର ଏକମାତ୍ର କାରଣ । ଗତ ମହାଯୁଦ୍ଧ ପରେ

ଆରବ ଦେଶଟାକୁ ନାନା ଭାଗରେ ବିଭକ୍ତ କରି ହୋଇଛି । ଆଉ ପ୍ରତ୍ୟେକ ଦେଶର ସୀମାନ୍ତ ପାର ହେବାକୁ ଆରବଗଣଙ୍କୁ କଷ୍ଟ ଉଠାଇବାକୁ ପଡ଼େ । ଆଗରେ କିନ୍ତୁ ଏପରି ନଥିଲା—ତେଣୁ ପୂର୍ବଅବସ୍ଥାକୁ ଫେରି ଯିବାକୁ ଆରବଗଣ ସବୁବେଳେ ସଚେଷ୍ଟ । ଆରବଗଣ ପ୍ୟାନ୍ ଇସ୍‌ଲାମ୍‌ର ଦୂରରେ । ତା'ର ନାନା କାରଣ ମଧ୍ୟ ଅଛି । ସେ କଥା ପରେ କହିବି ।

ଗାଁରେ ମୋ'ପରି ଲୋକର ଆଗମନରେ ସମସ୍ତେ ରାଜ୍‌ନୈତିକ ଚର୍ଚ୍ଚା କରୁଥିଲେ । ଆଉ ମୁଁ ଯେପରି ସେ ସବୁ କଥା ବୁଝି ପାରିବି ତା'ର ବ୍ୟବସ୍ଥା ମଧ୍ୟ କରୁଥିଲେ । ତାଙ୍କର ରାଜ୍‌ନୈତିକ କଥାର ଉପସଂହାରରେ ମୁଁ କମ୍ପି ଉଠୁଥିଲି ଆଉ ମୋ'ର ସ୍ୱଦେଶର କଥା ଭାବୁଥିଲି । ପ୍ରତିଦିନ ଅବଦୁଲ୍ଲାକୁ କହୁଥିଲି—"ମୋ'ର ଦେଶର ଅଶିକ୍ଷିତ ଲୋକଙ୍କୁ ଆପଣ କ୍ଷମା କରିବେ ।" ଅବଦୁଲ୍ଲା ତାଁର ଉତ୍ତରରେ କହୁଥିଲେ-"ହିନ୍ଦୁସ୍ଥାନ ବ୍ରିଟିଶ ସାମ୍ରାଜ୍ୟର ହେଲା ବଡ଼ ଅଡ୍ଡା । ନାନା ମତବାଦର ଲୋକେ ହିନ୍ଦୁସ୍ଥାନରେ ରହିବା ଯୋଗୁ ସାମ୍ରାଜ୍ୟବାଦୀଙ୍କୁ ବଡ଼ ସୁବିଧା ମିଳିଯାଇଛି । ସେମାନେ ହିନ୍ଦୁ ହିନ୍ଦୁଙ୍କ ମଧ୍ୟରେ ଯେପରି ବିବାଦର ସୂତ୍ରପାତ ଆରମ୍ଭ କରି ଦିଅନ୍ତି ସେଇପାଇଁ ଅପରଙ୍କୁ ନିର୍ଯାତନ କରିବା ପାଇଁ ହିନ୍ଦୁଙ୍କ ଠାରୁ ସାହାଯ୍ୟ ପାଆନ୍ତି । ଏଇ-ସବୁ ଯେପରି ନହୁଏ ଆମେ ତାହା ଆଲୋଚନା କରୁଛୁ ମାତ୍ର, ଅନ୍ୟ କିଛି କାରଣ ନାହିଁ ।"

ସକାଳ, ସଞ୍ଜରେ କେବଳ ରାଜ୍‌ନୀତି କଥା ପଡ଼ୁଥିଲା, କେବଳ ଓପର ଓଳି ମୁଁ ଟିକିଏ ଗାଁ ଭିତରକୁ ବୁଲି ଯାଉଥିଲି । ତୃତୀୟ ଦିନ ଓପର ଓଳି ମନେହେଲା ମୁଁ ଯେପରି ଗୋଟା ପଣେ ବେଦୁଇନ ହୋଇ ଯାଇଛି । ସାଇକେଲ ତ ପାର୍ଶଲ ହୋଇ ବାଗ୍‌ଦାଦ୍ ଚାଲି ଯାଇଛି । କାଲି ସକାଳୁ ମୁଁ ବେଦୁଇନ୍ ସହିତ ଯାତ୍ରୀ ହେବି, କେତେ କ'ଣ ଦେଖିବି, ଏଇ ଅନାଗତ

ଆନନ୍ଦରେ ମୁଁ ଅଧୀର ହୋଇ ପଡ଼ିଲି । ସୃଷ୍ଟି ନୀତିର କଥା ଏକାବେଳେକେ ଭୁଲିଗଲି ।

ସୂର୍ଯ୍ୟୋଦୟ ପୂର୍ବରୁ ଆମ ଓଟ ଗୁଡ଼ିକରେ ଲଦାଇ କାମ ଆରମ୍ଭ ହୋଇଗଲା । ଲଦାଇ କାମ ଶେଷ ହେଲା ପରେ ଆମ ଓଟ ଧାଡ଼ି ନେଇ ଗାଁ ବାହାରକୁ ବାହାରି ପଡ଼ିଲୁ । ସେତେବେଳ ସୁଦ୍ଧା ଆକାଶରୁ ତାରାମଣ୍ଡଳର ଦୀପ୍ତି ଲିଭିଯାଇ ନାହିଁ, ଆଉ ଶୁଭ୍ର ବାଲିକଣାର ଚକ୍‌ଚକ୍ ଆଭା ଟିକିଏ ହେଲେ ମଳିନ ପଡ଼ିନାହିଁ । ସେତେବେଳେ ଆରବ୍ୟ ମରୁର ସ୍ନିଗ୍ଧ ଶୀତଳ ବତାସ ଧୀରେ ଧୀରେ ବୋହି ଚାଲିଥିଲା । ମୁଁ ଓଟ ପିଠିରେ ବସି ଭାବୁଥିଲି ବିଶ୍ୱକବି ରବୀନ୍ଦ୍ରନାଥଙ୍କ କଥା । ତୁମେ ଆରବ୍ୟ ମରୁରେ ଓଟ ପିଠିରେ ବସିବା କଳ୍ପନା କରିଥିଲ ଆଉ ମୁଁ ଆଜି ଓଟ ପିଠିରେ ବସି ତାହା ଅନୁଭବ କରୁଛି । ସେଇଥି ପାଇଁ ପରା କହିଥିଲ "କଳ୍ପନା ଆଉ ଅନୁଭବର ପାର୍ଥକ୍ୟ ଦେଖି ହିଂସା ହୁଏ ।" କେ ଜାଣି କାହିଁକି ବିଶ୍ୱକବିଙ୍କ ସହ ଦେଖା ହୋଇଥିଲା, ଯେତେବେଳେ ନୂଆ କିଛି ଦେଖୁଥିଲି, ସେତେବେଳେ କାହିଁକି ମନେ ହେଉଥିଲା, ଏଇଟା ତ ନୂତନ ନୁହେଁ, ଏହା ଯେ ପୁରାତନ,—ପୁରାତନ ଅନ୍ତତଃ ଜଣକ ନିକଟରେ ।

ଆମର ଓଟ ଚାଲିଛନ୍ତି ଉତ୍ତର ଦିଗକୁ, ବାଗ୍‌ଦାଦ୍ ରହିଲା ପଶ୍ଚିମ ଆଡ଼କୁ । ଦିଗ ମନେ ରଖିବାର ମୋ'ର ଆବଶ୍ୟକ ନ ଥିଲା । ମୋ'ର ସେତେବେଳେ ଆରବ୍ୟ ରଜନୀର ଅନୁଭୂତି ଲାଭ କରିବା ପାଇଁ ଉତ୍କଣ୍ଠା ବଢ଼ି ଉଠିଥିଲା । କ୍ରମେ ସୂର୍ଯ୍ୟ ପୂର୍ବ ଚକ୍ରବାଳ ପ୍ରାନ୍ତରେ ଦେଖା ଦେଲେ । ସୂର୍ଯ୍ୟ ଆଡ଼କୁ ଚାହିଁବା ମାତ୍ରକେ ମୋ'ର ଭୀଷଣ ରାଗ ଆସିଲା । ସୂର୍ଯ୍ୟ ଧୀରେ ଧୀରେ ଉପରକୁ ଉଠିଲା, ଆଉ ଆମର ଓଟଶ୍ରେଣୀ ଆଗେଇ ଚାଲିଲେ । ଦୂରରୁ ଓଟଦଳ ଦେଖି ସମୁଦ୍ର କୂଳର ନଡ଼ିଆ ବଗିଚା ବୋଲି ଅନେକ ସମୟରେ ଭ୍ରମ ହୁଏ । ଯେଉଁଠି କେବଳ



ଓଠରୂପି ନଡ଼ିଆ ବଗିଚୁ ଆଉ ବାଲିର ସମୁଦ୍ର ସେଠାରେ ମରୀଚିକା ଯେ କ'ଣ ତାହା ବୁଝାଇବାକୁ ସମ୍ଭବ ନାହିଁ । ସେଥିପାଇଁ ଓଠ ପିଠିରେ ବସି ମଧ୍ୟ ନିଦରେ ଆଖି ବୁଜି ହୋଇ ଆସେ । ଯେଉଁମାନଙ୍କ କାନ୍ଧରେ ଦାୟିତ୍ୱ ନାହିଁ, ସେଇମାନଙ୍କୁ କେବଳ ନିଦ ଆସେ । ମୁଁ ବସି ବସି କେବଳ ଝିମାଉଥିଲି । ମୋ'ର ଓଠଟି ଠିକ୍ ଦଳମଝିରେ ଥିଲା । ଆଗରେ ଆଉ ପଛରେ ଅନେକ ଓଠଥିଲେ । ମୋ'ର ଓଠର ନାକର ଦଉଡ଼ି ଆଗର ଓଠର ଲାଞ୍ଜରେ ବନ୍ଧା ହୋଇଥିଲା । ଦଳଭ୍ରଷ୍ଟ ହେବାର ଆଶଙ୍କା ଏଥିରେ ନ ଥାଏ ।

ଆମର ଚାରିଆଡ଼େ କେବଳ ବାଲୁକା ପ୍ରାନ୍ତର । ଅବଦୁଲ୍ଲା ଆଗକୁ ଚାହିଁ ଆମର ଗତି ନିର୍ଦ୍ଦେଶ କରୁଥିଲେ । ଓଠର ଗୋଟିଏ ବଡ଼ ସୁନ୍ଦର ଗୁଣ ଅଛି । କମ୍ପାସ ଯେପରି ସବୁବେଳେ ଉତ୍ତର ଦିଗର ନିର୍ଦ୍ଦେଶ ଦିଏ, ଓଠ ଠିକ୍ ସେଇପରି ଦୂରରୁ ପାଣିର ଗନ୍ଧ ପାଇ ଯେଉଁଆଡ଼େ ପାଣିଅଛି ସେଇ ଆଡ଼କୁ ମୁହାଁ କରି ଚାଲେ । ନାବିକଗଣ ଯେପରି ପବନର ବିପରୀତ ଦିଗରେ ମଧ୍ୟ ଜାହାଜ ଚଳାଇ ଯାଇ ପାରନ୍ତି, ଓଠର ଗତି ମଧ୍ୟ ସେଇପରି ନିୟନ୍ତ୍ରିତ କରି ଯାଇପାରେ, ନତୁବା ନିକଟସ୍ଥ ଜଳାଶୟ ନିକଟରେ ଯାଇ ସେ ପହଞ୍ଚିବ ! ସେତେବେଳେ ଦଶଟା ବାଜି ନ ଥାଏ, କିନ୍ତୁ ଚତୁର୍ଦ୍ଦିଗର ପରିବେଷ୍ଟନୀ ଦେଖି ମନେ ହେଉଥିଲା ଯେପରି ଦି'ପହର ହୋଇ ଯାଇଛି । ଆରବ ଦେଶରେ ଦି'ପହର ଆରମ୍ଭ ହୁଏ ବେଳ ନ'ଟାରୁ, ଆଉ କ୍ରମାଗତ ଉତ୍ତାପ ବଢ଼ିଚାଲେ ବେଳ ଚାରିଟା ପର୍ଯ୍ୟନ୍ତ । ବେଳ ଚାରିଟାରେ ହଠାତ୍ ସୂର୍ଯ୍ୟର ରଙ୍ଗ ବଦଳିଯାଏ । ଓପରଓଳି ସୂର୍ଯ୍ୟଙ୍କୁ ଟିକିଏ ରକ୍ତାକ୍ତ ବୋଲି ଜଣାଯାଏ । ମରୁଭୂମିରେ ଦି'ପହରେ ଚାଲିବା ସମସ୍ତଙ୍କ ଯୋଗେ ହୋଇ ପାରିବ ନାହିଁ । ଦଶଟା ଆଗରୁ ଆମେ ଗୋଟିଏ ସାନ ଗାଁରେ ଆସି ପହଞ୍ଚିଥିଲୁ ।





ଗାଁ ଭିତରେ ମାଟିର ପାଚେରୀ ଘେରା ମାତ୍ର ତିନୋଟି ଘର; ଆଉ ସବୁ ତମ୍ବୁ । ତା'ର ମଝିରେ ଗୋଟିଏ ମସଜିଦ୍ । ମସଜିଦ୍‌ଟି ସିଆ ଦଳଙ୍କର । ସୁନ୍ନି ଦଳ ଭୁଲରେ ମଧ୍ୟ ସେଠାକୁ ଯାଆନ୍ତି ନାହିଁ । ଗାଁର ତିନୋଟି ଘର ମଧ୍ୟରୁ ଗୋଟିଏ ହେଉଛି 'ସରାଇ' ଏଠାରେ ସରାଇ କହିଲେ ବୁଝାଯାଏ ବିଶ୍ରାମାଗାର । ଆଉ ଯେଠାରେ ବିଶ୍ରାମ ନେବାକୁ ହୁଏ କିଛି ଅର୍ଥ ବିନିମୟରେ । ଆମେ ଗୋଟିଏ ଛୋଟ କୋଠରୀ ଭଡ଼ା ନେଲୁ । ଦୈନିକ ଭଡ଼ା ହେଉଛି ତିନିଶହ ଫିଲସ୍ । ତିନିଶହ ଫିଲସ୍‌ରେ ତିନି ଶିଲିଂ ହୁଏ । ଅବଦୁଲ୍ଲା ତିନି ଶିଲିଂ ଦେଇ କୋଠରୀଟି ଭଡ଼ା ନେଲେ । ଘରର କାନ୍ଥଗୁଡ଼ିକ ଖୁବ୍ ବହଳ । ଗୋଟିଏ ମାତ୍ର ଦୁଆର । କୋଠରୀ ଭିତରେ ଦିନବେଳେ ମଧ୍ୟ ଅନ୍ଧାର ଦେଖାଯାଏ । ସେଥିପାଇଁ ଘରଭିତରେ ଟିକିଏ ଶାନ୍ତି ମିଳେ । ବୟ ଆମ ପାଇଁ କାର୍ପେଟ ବିଛାଇ ଦେଲା, ତା'ପର ଉଟଗୁଡ଼ିକୁ ଖାଇବାକୁ ଦେଲା । ଆମେ ଗୋଡ଼ହାତ ଧୋଇ ଅର୍ଥାତ ଓଜୁ କରି କାର୍ପେଟରେ ବସିଲୁ । ଆମର ଦଳରୁ ଜଣେ ଲୋକ ଥଳି ଭିତରୁ ରୋଟି, କେତେକ ଖଜୁର ଆଉ ବଦନାଏ ପାଣି ଆଣିଦେଇ ପ୍ରତ୍ୟେକଙ୍କ ପାଇଁ କପେ କପେ କଫି ଆଣି ଦେଲା । ଆମ ଦେହ ତ ତେଲ ପାଣିରେ ଗଢ଼ା, ସୁତରାଂ ପାଣିଟା ଆମର ଆଗ କରି ଦରକାର । ଆରବଗଣ କିନ୍ତୁ ଆମ ପରି ନୁହନ୍ତି— ସେମାନେ ଗରମ କଫି ଖାଆନ୍ତି ଆଗରେ । ଏଥିରେ ଶୋଷ ଆପେ ଆପେ ଚାଲିଯାଏ । ଆମେ କଫି ପିଇ ଉଦ୍ଦେଶ୍ୟେ କିଛି ରୋଟି ଆଉ ଦୁଇଟି ଲେଖାଏଁ ଖଜୁର ଖାଇଲୁ । ଅବଦୁଲ୍ଲା ଟିକିଏ ବୋଲି ପାଣି ପିଇଲେ ନାହିଁ, ମୁଁ କିନ୍ତୁ ପେଟଭରି ପାଣି ପିଇଲି । ଅବଦୁଲ୍ଲା ମୋ'ର ପାଣି ପିଇବା ଦେଖି ଟିକିଏ ହସି କହିଲେ, ହିନ୍ଦଗଣ ପାଣି ନ ପିଇ ରହି ପାରିବେ ନାହିଁ ।

ସାମାନ୍ୟ କିଛି ଖାଇ ଆମେ ବିଶ୍ରାମ ନେଲୁ । ମୋ ଆଉ ତ କହିବାର କିଛି ନ ଥିଲା । ଗରମ ମୋତେ ନାକେଦମ୍



କରି ପକାଉ ଥିଲା । ଅବଦୁଲ୍ଲା ଧୀର ହୋଇ ରହିବା ଲୋକ ନୁହନ୍ତି । ସେ ଅନବରତ ଯୋଭିଏଠ୍, ବଲସେଭିଜମ, ଭଗ-ବାନ ଏଇସବୁ କଥା ଉପରେ ଗଳ୍ପ ଆରମ୍ଭ କରିଦେଲେ । ମୁଁ କେବଳ ହଁ, ହଁ କରି କାହାଣୀ ଶୁଣିଲାଭଳି ତାଙ୍କ କଥାକୁ ଏଡ଼ାଇ ଯାଉଥିଲି । ତାଙ୍କର ଧାରଣା ଯେ ଯଦି ଆରବଦେଶଟା ସୋଭିଏଠ୍ ହୋଇଯାଏ ତା ହେଲେ ଭଗବାନ ନିଶ୍ଚୟ ମରିବେ । ଭଗବାନଙ୍କୁ ସେମାନେ ଜୀବିତ ରଖିବାକୁ ଚାହାନ୍ତି । ବେଳେ ବେଳେ ସେ ଇଂରାଜୀରେ କହି ଯାଉଥିଲେ, "ଭଗବାନ ଦୀର୍ଘଜୀବି ହୁଅନ୍ତୁ" ମୁଁ ଖାଲି ନୀରବରେ ଶୁଣି ଯାଉଥିଲି ।

ସୂର୍ଯ୍ୟ ପ୍ରାୟ ଅସ୍ତ ଯିବା ଭଳି । ଦଳେ ଦଳେ ଲୋକ ଆସି ଏହି ସ୍ଥାନ ଗାଁଟିରେ ଜମା ହୋଇ ପଡ଼ିଲେ । ସନ୍ଧ୍ୟାର ଟିକିଏ ପରେ ପ୍ରତି ତମ୍ବୁରେ ସୁନ୍ଦର ସ୍ଥାନ ସ୍ଥାନ ଆଲୁଅଟିମାନ ଜଳି ଉଠିଲା । ପ୍ରତ୍ୟେକେ ନିଜ ନିଜ ପଣ୍ୟ ଦ୍ରବ୍ୟ ତମ୍ବୁ ଆଗରେ ସଜାଇବାକୁ ଲାଗିଲେ । ସବୁ ସଜା ହୋଇଗଲା ପରେ କେହିବା ଆସି କିଣିଲା ଆଉ କିଏ ବିକିଲା । ଅବଦୁଲ୍ଲାଙ୍କର ମଧ୍ୟ ବେଶ୍ ଦୁ'ପଇସା ରୋଜଗାର ହେଲା. ଆଉ ସେଇ ଲାଭ ପାଇଁ ଭଗବାନଙ୍କୁ ଧନ୍ୟବାଦ ଦେବାକୁ ଲାଗିଲେ । ତା'ପର ଆରମ୍ଭ ହେଲା "ଖାନା ଆଉ ପିନା", । ଜଣେ ଅନ୍ୟ ଜଣକ ତମ୍ବୁକୁ ଯାଇ କିଛି ଖାଇଲେ ଆଉ ଅରକ ପିଇଲେ । ଆରବୀ ଅରକ ଆମ ଦେଶୀ ମଦ ପରି ହେଲେ ମଧ୍ୟ ସେଥିରେ କଡ଼ା ଗନ୍ଧ ନ ଥାଏ । ଅଉ ପାଣିରେ ଢାଳିବା ମାତ୍ରକେ ସୋଡ଼ାପାଣି ଭଳି ଆଗ ଟିକିଏ ଘୋଳାଟିଆ ହୋଇ ଉଠି ପୁଣି ପରିଷ୍କାର ହୋଇ-ଯାଏ । ଏଇ ମଦ ବଡ଼ ଠାଣୁଆ ଆଉ ଗ୍ଲା'କପରେ କପେ ପିଇଲା ମାତ୍ରକେ ଭୟଙ୍କର ନିଶା ହୁଏ । ମୁଁ ଆଉ ଅବଦୁଲ୍ଲା ପ୍ରତ୍ୟେକ ତମ୍ବୁକୁ ଯାଇ ସମସ୍ତଙ୍କ ସହିତ "ଖାନା ପିନା" ରେ

ବେଦୁଇନ ଦେଶ

ଟିକାଏ ଟିକାଏ ଯୋଗ ଦେଇ ଅସିଲୁ । "ଖାନା ପିନା" ଶେଷ ପରେ ମୋତେ ବେଶ୍ ଗରମ ଜଣାଗଲା । ହେଲେ ମଧ୍ୟ ଦିନର ଗରମ ଏକ ପ୍ରକାର । ଏଇଟା ହେଲା ପେଟର ଗରମ । ପେଟର ଗରମ ଥଣ୍ଡା କରିବା ପାଇଁ ବାହାରକୁ ଯାଇ ବାଲି ଉପରେ ଶୋଇ ପଡ଼ିଲି ।

•

ରାତି ଯେତେବେଳେ ଅଧ ହୋଇ ଯାଇଥାଏ । ଆକାଶରେ ତାରା ମଣ୍ଡଳୀ ଝଲମଲ କରୁଥାନ୍ତି । ମୃଦୁମନ୍ଦ ଶୀତଳ ପବନ ପ୍ରାଣରେ ମାଦକତା ଆଣି ଦେଉଥିଲା । ବାଲି ଉପରେ କୌଣସି ପ୍ରକାର ପୋକ ଯୋକ ନ ଥିବାରୁ ବେଶ୍ ଭଲା ପରି ଆରାମ ଲାଗୁଥିଲା । ମଝିରେ ମଝିରେ କଏ ସବୁ ସାରେଙ୍ଗୀ ବଜାଇ ଗୀତ ଗାଉଥିଲେ । କେହି ପୁଣି ନର୍ତ୍ତକୀ ପରି ପୋଷାକ ପିନ୍ଧି ନାଚି ନାଚି ବ୍ୟବସାୟୀମାନଙ୍କର ମନୋରଞ୍ଜନ କରୁଥିଲା । କୌଣସି କୌଣସି ବ୍ୟବସାୟୀ ଶୋଇ ଶୋଇ ଦେହ ହାତ ମୋଡ଼ା କରାଉଥିଲେ । ବାହାରେ ଶୋଇ ଶୋଇ ଏଇ ସବୁ ଦେଖି ଆସି ଅବଦୁଲ୍ଲାଙ୍କୁ କହିଲି—ବନ୍ଧୁ, ତମର ଆରବ୍ୟ ରଜନୀ ସତରେ ବଡ଼ ଆରାମର—କିନ୍ତୁ ସେ ଆରାମରୁ ଆପଣ ଓ ମୁଁ ଦୁହେଁଯାକ ବଞ୍ଚିତ । ଅବଦୁଲ୍ଲା କହିଲେ, ଆପଣ ଭଗବାନ ମାନନ୍ତି ନାହିଁ । ତେଣୁ ଆପଣଙ୍କ ଭାଗ୍ୟରେ ତାହା ନାହିଁ । ମୋ ଭାଗ୍ୟଟା ଭଲ କି ମନ୍ଦ ଜାଣେ ନାହିଁ । ତେବେ ଏହିପରି ଆନନ୍ଦ ମୁଁ ପସନ୍ଦ କରେ ନାହିଁ । ଅବଦୁଲ୍ଲା କଥାଟା ରାଗିକରି କହିବାରୁ ମୋ'ର ମନେହେଲା ଆରବଗଣ ଅନ୍ୟାୟର ପ୍ରତିକାର କରନ୍ତି । ସେମାନେ ଛେଳି ପଲ ପରି ଅନ୍ୟାୟ ହଜମ କରନ୍ତି ନାହିଁ । ଛେଳି ଛୁଆ ପରି ଅନ୍ୟ ଦ୍ୱାରା ହତ ହୋଇ ଭୟିତ ହୁଅନ୍ତି ନାହିଁ । ସେମାନେ ସବୁବେଳେ ନିଜର ନିଜର ରକ୍ଷା ନିଜେ କରନ୍ତି । ତାଙ୍କର ସହ୍ୟ ଶକ୍ତି ଅଛି । ସମାଜର ତାଣ୍ଡବ ନୃତ୍ୟ ତାଙ୍କର କୌଣସି ଅନିଷ୍ଟ କରିପାରେ



ନାହି । ବ୍ରହ୍ମଚର୍ଯ୍ୟଙ୍କୁ ସେମାନେ ମହାଲିଟ ନ କହି—କହନ୍ତି ଆତ୍ମସମ୍ମାନକୁ । ଆରବ ଜାତି ଆତ୍ମସମ୍ମାନ ରକ୍ଷାକରି ଜାଣେ । ରାଗ ଆଉ ଅହଙ୍କାର ତାଙ୍କ ପାଖରେ ମଧ୍ୟ ଅଛି । ଦୟା ଯେ ନାହିଁ, ତାହା କୁହାଯାଇ ନ ପାରେ । ଯଦି ତାଙ୍କ ମନରେ ଦୟା ଏବଂ ଉଦାରତା ନ ଥାନ୍ତା, ତା ହେଲେ ମୋ ପରି ଲୋକକୁ ଅବଦୁଲ୍ଲା ଅତିଥି ରୂପରେ ଗ୍ରହଣ କରି ନ ଥାନ୍ତେ । ଆମ ଦେଶର ଇସ୍‌ଲାମ ଧର୍ମାବଲମ୍ବୀଗଣଙ୍କୁ ଦେଖି ଆରବ ସଭ୍ୟତାର ରୂପ ନିର୍ଣ୍ଣୟ କରିବା ଅନୁଚିତ । ଅବଦୁଲ୍ଲା ଭଲ-ଭାବରେ ଜାଣିଥିଲେ, ମୁଁ ଭଗବାନ ଏବଂ ତାଙ୍କର ପ୍ରେରିତ ପୁରୁଷମାନଙ୍କ କଥାକୁ ବାଜେ କଥା ବୋଲି ସ୍ୱୀକାର କରେ । ମୁସଲମାନଗଣ ଯାହାକୁ ଅଖାଦ୍ୟ କହନ୍ତି—ତାହା ମୁଁ ଖାଏଁ, ତେବେ ମଧ୍ୟ ମୋତେ ସେ ଅତିଥି ଭାବରେ ଗ୍ରହଣ କରିଥିଲେ । ମୋତେ ସାଙ୍ଗରେ ରଖି ତାଙ୍କର ପଇସାଏ ଲାଭ ହୋଇ ନାହିଁ, ବରଂ ମୋ ପଛରେ ତାଙ୍କର ଅନେକ ଖରଚ ହୋଇଛି । ମୋତେ ବାଗ୍‌ଦାଦ୍‌ରେ ପହଞ୍ଚାଇ ଦେଇ, ମୋ'ର ସାଇକେଲକୁ ଷ୍ଟେସନରୁ ଖଲାସ କରି ଆଣି ଦେଇଛନ୍ତି । ଅବଦୁଲ୍ଲାଙ୍କ ପାଖରେ ବେଶୀ ସମୟ ନ ବସି ନିକଟର ଗୋଟିଏ ବାଲିକୁଦ ଉପରେ ଯାଇ ଶୋଇ ପଡ଼ିଲି । କାଲି ମଧ୍ୟ ଆମକୁ ଏଠାରେ ରହିବାକୁ ହେବ ।

ରାତି ଗମ୍ଭୀର ହୋଇ ଆସିଛି । ଜନପ୍ରାଣୀ କାହାରି ସାଡ଼ା ଶବ୍ଦ ନାହିଁ । ଚତୁର୍ଦ୍ଦିଗ ନୀରବ ନିସ୍ତବ୍ଧ । ମୁଁ ବେଶ୍ ଆନନ୍ଦରେ ଶୋଇପଡ଼ିଛି । କିଏ ଯେପରି ମୋ ଦେହରେ ହାତ ପକାଇଲା । ହାତର ସ୍ପର୍ଶରୁ ବୁଝିପାରିଲି ଯେ ଡକାଏତ ନୁହେଁ ନିଶ୍ଚୟ, ବହୁରୂପୀ ହୋଇଥିବ । ବହୁରୂପୀକୁ ତଡ଼ିଦେଲି । ପରଦିନ ସକାଳେ ସେଇ ବହୁରୂପୀକୁ ଯେତେବେଳେ ଚିହ୍ନିଲି, ଦେଖିଲି ସେ ଜଣେ ଭିକାରି । ରାତିରେ ଗୋଡ଼ହାତ ଟିପାଟିପି

କରି ଦେଇ ଧା'ପଇଆ ରୋଜଗାର କରନ୍ତି । ମୁ ସ୍ତ୍ରୀ'ର ପକ୍ଷପାତୀ ନଥିବାରୁ ଶ୍ୱେତକାୟ ଆରବଗଣ ମୋତେ ନିଗ୍ରୋ ଶ୍ରେଣୀର ସ୍ତରରେ ଗଣନା କରୁଥିଲେ । ଏହି ବିଷୟରେ ଅବଦୁଲ୍ଲାଙ୍କ ସହିତ ମୋ'ର ବହୁ ଆଲୋଚନା ହୋଇଛି । ସେ ସବୁ ଭ୍ରମଣ କାହାଣୀରେ ସ୍ଥାନ ପାଇବା ଯୋଗ୍ୟ ନୁହେଁ ବୋଲି ବାଦ୍ ଦେଲି ।

ଖରାର ତେଜ ଆଜି ଆହୁରି ଟିକିଏ ବଢ଼ିଛି । ତାପମାନ ଯନ୍ତ୍ରରେ ଉତ୍ତାପ ଶହେ କୋଡ଼ିଏ ଡିଗ୍ରୀକୁ ଉଠିଛି । ପବନ ଏକା-ବେଳେକେ ବନ୍ଦ । ଆମେ ଦରମରା ହୋଇ ଦୁଆର କିଳି ଶୋଇଥିଲୁ, ଚାକରମାନଙ୍କର ମଧ୍ୟ ସେହି ଅବସ୍ଥା । ଜିଭଟା ଯେତେବେଳେ ଶୁଖି ଯାଉଥିଲା ଟିକିଏ ପାଣି ପିଇ ତାକୁ ଭିଜାଇ ପକାଉଥିଲି । ଏଇପରି ଭାବରେ ସମୟ କଟାଇବାକୁ ଆଦୌ ଭଲ ଲାଗୁ ନ ଥିଲା । ଧାଂପହରିଆ ନମାଜବେଳ ଆସିଲା । ସଙ୍ଗୀମାନେ ସଭିଏଁ ଉଜୁ କରିବାକୁ ଗଲେ, ମୁଁ ଉଠିବସି ପାଣି ଟିକିଏ ଅଣାଇ ତାଙ୍କରି ପରି ଉଜୁ କରି ଟିକିଏ ଶାନ୍ତି-ପାଇଲି । ସଙ୍ଗୀମାନେ ନମାଜ ପଢ଼ିଲେ । ମୁଁ ବସିବସି ଦେଖିଲି ।

କାମ ତ କିଛି ନ ଥିଲା ଏଣେ ଭୋକ ଆଉ ଶୋଷ ଉଭୟ ମୋତେ କାତର କରି ପକାଉଥିଲା । ଗରମ ଦେଶରେ ଭୋକ ଯେପରି ହୁଏ ଥଣ୍ଡା ଦେଶରେ ସେପରି ହୁଏ ନାହିଁ । ସନ୍ଧ୍ୟାର କଣାବକା ସରିଲା ପରେ ମୁଁ ଆଉ ଘରେ ନ ବସି ଏକା ଏକା ମରୁଭୂମି ଉପରେ ଯାଇ ବୁଲିଲି । ରାତିରେ ପୁଣି ମରୁଭୂମିରେ ବେଶୀଦୂର ଯିବା ଉଚିତ ନୁହେଁ । ବାଟବଣା ହେବାର ସମ୍ଭାବନା ରହିଛି । ତା ବି କେବଳ ହେଲେ ଗୋଟିଏ କଥା ଥିଲା, ତା'ସାଙ୍ଗକୁ ଲାଗି ରହିଥିଲା ଡକାଏତଙ୍କ ଭୟ । ମରୁଭୂମିରେ ଅନେକ ସମୟରେ ଡକାୟିତି ହୁଏ । ମରୁଭୂମିରେ ଆରବ ଚୋରି କରେ ନାହିଁ, ଡକାଏତି ଭଳି







ପାଏ । ତେବେ ପୁରୁଣା ଶତ୍ରୁ ଘରରେ ଡକାୟତି କରି ନ ପାରିଲେ ଗୌରବ କରିବାକୁ ସେମାନେ ଦୋଷାବହ ମନେ କରନ୍ତି ନାହିଁ । ଏଇଠାରେ ସେମାନେ ପ୍ରାଚୀନ ଶତ୍ରୁତା ଉପରେ ଗୁରୁତ୍ୱ ଦିଅନ୍ତି । ମରୁଭୂମିରେ ବର୍ତ୍ତମାନ ସୁଦ୍ଧା ନାନା-ପ୍ରକାର ନିୟମ ପ୍ରଚଳିତ ଅଛି, ତେବେ ଅନେକ ପରିମାଣରେ କମି ଆସୁଛି କହିଲେ ଅତ୍ୟୁକ୍ତି ହେବ ନାହିଁ । ଖ୍ରୀଷ୍ଟାନ ପାଦରୀ-ଗଣ ଅନେକ ଅଜଣା କଥା ସର୍ବସାଧାରଣଙ୍କ ଜ୍ଞାତ ସାରରେ ଆଣିଛନ୍ତି ସତ କିନ୍ତୁ ତାଙ୍କ କଥାଟା ଯେପରି ଓଲଟପାଲଟ ନ ହେବ ସେଥିପାଇଁ ଜୋର ଦେଉଛନ୍ତି ମଧ୍ୟ ! ଆରବମାନଙ୍କ ବିଷୟରେ ଯେଉଁମାନେ ପାଦରୀ ନୀତି ପାଳନ କରିବେ ସେମାନେ ନିଶ୍ଚୟ ଠକିବେ, କାରଣ ମଣିଷର ସ୍ୱଭାବ ଏବଂ ସମାଜର ପରିସ୍ଥିତି ଅନବରତ ବଦଳି ଚାଲିଛି । ଆରବଗଣ ମଧ୍ୟ ମଣିଷ, ସୁତରାଂ ତାଙ୍କର ଉନ୍ନତି ମଧ୍ୟ ଅନିବାର୍ଯ୍ୟ । ତାଙ୍କ ମଧ୍ୟରେ ଯେଉଁ ସବୁ ପୁରାତନ ନିୟମ ବର୍ତ୍ତମାନ ସୁଦ୍ଧା ରହିଛି, ତା ପଛରେ ନମତ୍ୱକାଶ ପଥର ଇଙ୍ଗିତ ଗ୍ରହଣ କରିବାର ଜ୍ଞାନ ତାଙ୍କର ଅଭାବ ରହିଛି ।

ଧନୀ ବ୍ୟବସାୟୀଗଣ ରାତିରେ ମଧ୍ୟ ବାଟ ଚାଲନ୍ତି । ବ୍ୟବସାୟୀଗଣଙ୍କର ଅନ୍ୟ ନାମ ବେଦୁଇନ । ବେଦୁଇନଗଣ ସବୁବେଳେ ଅସ୍ତ୍ରଶସ୍ତ୍ରରେ ସଜ୍ଜିତ ଥାଆନ୍ତି । ଚୂକରବାକର ମଧ୍ୟ ଅନେକ ଥାଆନ୍ତି । ଖଣ୍ଡଯୁଦ୍ଧ ଅନେକ ସମୟରେ ହୋଇଯାଏ । ଜଣକେତେ ମଧ୍ୟ ମରନ୍ତି ସେଥିରେ । ଏଇପରି ଖୁନ୍‌ଖରାବୀ ଯେପରି ନ ହୁଏ ସେଥିପାଇଁ ବିଦେଶୀ ଶାସକ ଶ୍ରେଣୀ ଆରବବାସୀଙ୍କୁ ମଧ୍ୟ ଭାରତବାସୀ ପରି ନିରସ୍ତ୍ର କରିବାକୁ ସଚେଷ୍ଟ, କିନ୍ତୁ ଆରବ ଏପରି ଆଇନକୁ ଭ୍ରୂକ୍ଷେପ କରେ ନାହିଁ, ଯାହା ତାହାକୁ ଆଉ ତା'ର ସମାଜକୁ ସର୍ବୋତଭାବରେ ରକ୍ଷାକରି ପାରିବ ନାହିଁ । ସେଥିପାଇଁ ଆରବ ଅସ୍ତ୍ର ତିଆରିକରେ, ବିକେ, କିଣେ ଆଉ ଅନ୍ୟାୟ ଆଇନ ଉପରେ ପଦାଘାତ କରେ !



ଯେଉଁସବୁ ଆରବ ନିରହ ଆଉ ଗରିବ ସେମାନେ ଅସ୍ତ୍ରଶସ୍ତ୍ର ରଖନ୍ତି ନାହିଁ, ଆଉ ସେଥିପାଇଁ ଶକ୍ତିଶାଳୀ ଆରବ ମଧ୍ୟ ତାଙ୍କର କୌଣସି ଅନିଷ୍ଟ କରନ୍ତି ନାହିଁ । ଆମ ସହିତ କୌଣସି ହତିଆର ନ ଥିଲା—ସେଥିପାଇଁ ଧନୀ ଆରବ ଆମର କିଛି କରି ନାହାନ୍ତି । ଦିନେ ହଠାତ୍ ଦିନବେଳଠାରେ ଆମ ଦଳର ଜଣେ ଲୋକ ଚିତ୍କାର କରି ଉଠିଲା । କିଛିକ୍ଷଣ ପରେ କେତେ ଜଣ ଘୋଡ଼ସବାର ଆମ ପାଖକୁ ଆସି ଆମ ପାଖରେ କୌଣସି ହାତହତିଆର ଅଛି କି ନାହିଁ ଦେଖିବାକୁ ଲାଗିଲେ । ଯେତେବେଳେ ଦେଖିଲେ, ଆମ ପାଖରେ କିଛି ନାହିଁ ଆଉ ଆମେ ସାଧାରଣ ବ୍ୟବସାୟୀ, ସେତେବେଳେ ଆମକୁ ଅବଜ୍ଞା କରି ଛାଡ଼ି ଚାଲିଗଲେ । ସେଇ ଭୟରେ ମୁଁ ବେଶୀଦୂର ନ ଯାଇ ଟିକିଏ ବୁଲାବୁଲି କରି ଫେରି ଆସିଲି ।

ଦୋକାନୀମାନଙ୍କର ବିକାକିଣା ବସି ନିବିଷ୍ଟ ମନରେ ଦେଖୁଥିଲି, ହଠାତ୍ ଦଳେ ଆରବ ଆସି ଗାଁ ପାଖରେ ପହଞ୍ଚିଥିଲେ । ଅନେକେ କିଣାବିକା ବନ୍ଦ କରିଦେଇ ଚିତ୍କାର କରିବାକୁ ଲାଗିଲେ । ନବାଗତ ଆରବଦଳ ଅଳ୍ପଦୂରରେ ତମ୍ବୁଟାଣି ବିଶ୍ରାମ କଲେ । ସେମାନେ ପ୍ରତ୍ୟେକେ ତରବାରି ଆଉ ବନ୍ଧୁକରେ ସଜ୍ଜିତ ଥିଲେ, ଆଉ ଯେ କୌଣସି ମୁହୂର୍ତ୍ତରେ ଲଢ଼ାଇ କରିବାକୁ ପ୍ରସ୍ତୁତ ଥିଲେ । ଏ ଅଞ୍ଚଳର ଆରବଗଣ ଶ୍ୱେତକାୟ ଲମ୍ବା ଆଉ ସୁନ୍ଦର । ତାଙ୍କ ଦେହରେ ପ୍ରଚୁର ବଳ ଅଥଚ ଖାଆନ୍ତି କମ୍ । ଖୁବ୍ କମ୍ ସମୟ ପୁଣି ଶୁଅନ୍ତି । ମନ ଭିତରଟା ତାଙ୍କର ଅତି ସରଳ, ଏଣେ ପୁଣି ରାଗ ସିହ୍ନ ପରି । ମରଣ ଯାଙ୍କର ପଦାନତ, ତେବେ ମଧ୍ୟ ସେମାନେ ସ୍ୱାଧୀନ ନୁହନ୍ତି । ବ୍ରିଟିଶ, ଫରାସୀ, ଇଟାଲୀ ତାଙ୍କର ଭାଗ୍ୟ ନିୟନ୍ତ୍ରଣ କରନ୍ତି । ମୁଁ ଟିକିଏ କରଛଡ଼ା ଦେଇ ଏହାର କାରଣ କ'ଣ ଚିନ୍ତା କରୁଥିଲି ।

ରାତ ଗମ୍ଭୀର ହେବା ଦେଖି ଆମେ ସ୍ଥାନ ତ୍ୟାଗ କରିବାକୁ ପ୍ରସ୍ତୁତ ହେଲୁ । ଓଟ ଲଦାଇ ହୋଇଗଲା, ପରେ ଆମେ ଓଟ ପିଠିରେ ବସିଲୁ । ଓଟ ଉଠି ଛିଡ଼ାହେଲା । ଓଟର ନାକ ଫୋଡ଼ା ହୋଇ ସେଥିରେ ଦଉଡ଼ି ବନ୍ଧା ହୋଇଛି । ଓଟର ଏଇ ନାକ ଫୋଡ଼ା କାମଟା ସମସ୍ତଙ୍କ ଯୋଗେ ହୁଏ ନାହିଁ । କଂସାଇ ଶ୍ରେଣୀର ଲୋକେ ଏଇ କାମ କରନ୍ତି । କଂସାଇ ଶ୍ରେଣୀର ସ୍ଥାନ ସମାଜର ଖୁବ୍ ତଳରେ । ଅନେକେ ତାଙ୍କ ସହିତ ଏକା ଆସନରେ ବସିବାକୁ ଘୃଣା ମନେ କରନ୍ତି । ମୁଁ ଭାବୁଥିଲି, ଯେଉଁ ଜାତଙ୍କୁ ଛାଡ଼ି ସମାଜ ଚଳିପାରେ ନାହିଁ, ସେମାନଙ୍କୁ କାହିଁକି ଘୃଣାକରେ । ଓଟର ନାକଫୋଡ଼ା କାମଟା ଖୁବ୍ ନିର୍ଦ୍ଦୟତା ପୂର୍ଣ୍ଣ, ସେଇଥିପାଇଁ ତ କଂସାଇ ସେଇ କାମ କରେ । ଇଚ୍ଛାକଲେ ତ ଓଟର ନାକ ନ ଫୋଡ଼ି ଫାଷିଆର ବ୍ୟବସ୍ଥା କରି ପାରନ୍ତେ । ଖ୍ରୀଷ୍ଟାନ ଆରବଗଣ ଫାଷିଆ ପିନ୍ଧାଇ ଦିଅନ୍ତି—ନାକ ଫୋଡ଼ନ୍ତି ନାହିଁ । ଏଇ ସବୁ ନାନା ଚିନ୍ତାରେ ସମୟ କଟାଇ ବେଳ ଦଶଟା ସରିକି ଇଉଫ୍ରେଟିସ୍ ନଦୀତୀରର ଗୋଟିଏ ବଡ଼ ଗାଁରେ ଆସି ପହଞ୍ଚିଲୁ । ଗାଁ ଭିତରେ ଅସଂଖ୍ୟ ଘର, କିନ୍ତୁ ଗୋଟିଏ ବୋଲି ପକ୍କା ନୁହେଁ । ଘରଗୁଡ଼ିକ ସବୁ ମାଟିରେ ତିଆରି । ଗାଁର ଗୋଟିଏ ସରାଇରେ ଆମେ ଆଶ୍ରୟ ନେଲୁ । ଏଥିପାଇଁ ଆମକୁ ବେଶୀ ଟଙ୍କା ଖର୍ଚ୍ଚ କରିବାକୁ ପଡ଼ି ନାହିଁ । ଏ ଅଞ୍ଚଳର ସରାଇ ଗୁଡ଼ିକ ଗୋଟିଏ ଲମ୍ବାଘର, ଆଉ ତା'ଭିତରେ ଅନେକ ଗୁଡ଼ିଏ କୋଠରି । ପ୍ରତ୍ୟେକ କୋଠରିରେ ଦୁଇଜଣ ଲୋକ ରହିପାରିବେ । ଅବଦୁଲ୍ଲା ଆଉ ମୁଁ ଦିଓଟି କୋଠରି ଦଖଲ କଲାପରେ ଆଉ ସଙ୍ଗୀମାନଙ୍କ ପାଇଁ ଆଉ ଚାରୋଟି କୋଠରି ନିଆଗଲା । ସେ କୋଠରି ଗୁଡ଼ିକରେ ତିନିଜଣ ଲେଖାଏଁ ରହି ପାରିବେ । ଆରବୀ ପ୍ରଥାରେ ପ୍ରଥମେ ଭଜି, ତା'ପରେ ଖାଇବା କାମ ଶେଷକରି ସଭିଏଁ ଶୋଇପଡ଼ିଲୁ । ଓପରଓଳି ବୁଲିଗଲୁ ବେଳେ କେତେକ ଆରବ ସ୍ତ୍ରୀ ଲୋକଙ୍କ

ସହିତ ଦେଖାହେଲା । ସ୍ତ୍ରୀଙ୍କର ଦେହର ରଙ୍ଗ ଦେଖି ମୁଁ ବେଶୀ ସମୟ ବାହାରେ ନ ରହି ଅପଣା କୋଠରୀ ଭିତରକୁ ଆସି ଡାଏରୀ ଲେଖିବା ଆରମ୍ଭ କଲି ।

ସ୍ତ୍ରୀଙ୍କର ଦେହର ରଙ୍ଗ ଇଉରୋପୀୟଙ୍କ ପରି ଶ୍ୱେତ ନୁହେଁ କି ଆରବଙ୍କ ପରି ଶ୍ୱେତ-ପୀତର ସଂମିଶ୍ରଣ ବି ନୁହେଁ । ଅନେକ ସମୟ ଚିନ୍ତା କରି ସ୍ଥିର କଲି ଏହା ପାଣ୍ଡୁର ବର୍ଣ୍ଣ ଛଡ଼ା ଆଉ କିଛି ନୁହେଁ । ବର୍ଣ୍ଣର ସମାଧାନ କରି ପୁଣି ବାହାରିଲି । ଗାଁ ରେ ଯେତେ ପୁରୁଷଙ୍କୁ ଦେଖିଲି ତାଙ୍କ ମଧ୍ୟରୁ ପାଣ୍ଡୁର ରଙ୍ଗ ବିଶିଷ୍ଟ ଲୋକ ଖୁବ୍ କମ୍ । ଅନେକେ ଦେଖିବାକୁ ବାଦାମୀ, ଶ୍ୱେତ କିମ୍ବା ସିମେଣ୍ଟ୍ । ପାଣ୍ଡୁର ବର୍ଣ୍ଣର ଲୋକଗୁଡ଼ିକ ବାଙ୍ଗରୀ ବଳଶାଳୀ ଅଉ ସ୍ୱଳ୍ପଭାଷୀ । ସ୍ତ୍ରୀ ଲୋକମାନେ ମଧ୍ୟ ସେଇଭଳି । ଚିତା କୁଟାଇବା ସ୍ତ୍ରୀଙ୍କ ପକ୍ଷରେ ବଡ଼ ଆନନ୍ଦର ବସ୍ତୁ । ଆମ ଦେଶର ସ୍ତ୍ରୀଲୋକଙ୍କର ଚିତାକୁଟା ଦେଖିଲେ ମନେ ହୁଏ ଯେପରି ସେମାନେ ସର୍ବାଙ୍ଗ ଚିତାରେ ଭରି ରଖିବାକୁ ଚାହାନ୍ତି । କିନ୍ତୁ ଆରବ ନାରୀଙ୍କର ସମ୍ପୂର୍ଣ୍ଣ ସ୍ୱତନ୍ତ୍ର ଧାରଣା । ପ୍ରତ୍ୟେକଙ୍କ ଗାଲରେ ପାଞ୍ଚୋଟି ଲେଖାଏଁ ସାନ ବିନ୍ଦୁ । ଭ୍ରୂ ଦୁଇଟିର ମଝିରେ ଗୋଟିଏ ଟିପ ଆଉ ହାତର କହୁଣି ଉପରେ ଗୋଟିଏ ସ୍ଥାନରେ ଏକସ ତିନୋଟି ବିନ୍ଦୁ । ଏମାନେ ପର୍ଦାନସୀନ ନୁହନ୍ତି । ହେଲେ ମଧ୍ୟ ପୁରୁଷଙ୍କ ସଂସ୍ପର୍ଶରେ ଖୁବ୍ କମ୍ ଆସନ୍ତି । ଅବଦୁଲ୍ଲା କହୁଥିଲେ, "ଏମାନେ ଜାତିରେ ଆରବ, ଆରବୀ ଭାଷା ମଧ୍ୟ କହନ୍ତି କିନ୍ତୁ ଇସ୍‌ଲାମ ଧର୍ମର ପାଖ ପଶନ୍ତି ନାହିଁ । ଏମାନେ କୌଣସି ଜନ୍ତୁର ବେକ କାଟନ୍ତି ନାହିଁ—ଏକ ଆଘାତରେ ହତ୍ୟା କରନ୍ତି ମାତ୍ର ।" ପୁଣି କହିଲେ—"ଦେଖନ୍ତୁ ଏମାନେ କେଡ଼େ ନିର୍ଦ୍ଦୟ ଭାବରେ ପୈଶାଚିକ କାର୍ଯ୍ୟ କରନ୍ତି ।" ମୁଁ ତାଙ୍କ କଥାର କୌଣସି ପ୍ରତିବାଦ କରି ନ ଥିଲି ।

ଗାଁ ପାଖରେ ଗୋଟିଏ ବଡ଼ ପୋଖରୀ । ପୋଖରୀର ଚାରିପାଖ ଖଜୁରି ବଗିଚାରେ ଭର୍ତ୍ତି । ବଗିଚା ଗୁଡ଼ିକ ଦେଖିବାକୁ



ସୁନ୍ଦର । ପାଣି କିନ୍ତୁ ମିଠା ନୁହେଁ, ଲୁଣିଆ । ତହିଁରେ କେହି ଗାଧୁଅନ୍ତି ନାହିଁ । ମୁଁ କିନ୍ତୁ ସେଇ ପାଣିରେ ଗାଧୋଇ ପଡ଼ିଲି । ମୋ ସାଙ୍ଗରେ ଯେଉଁ ଦୁଇଜଣ ଆରବ ଆସିଥିଲେ, ସେମାନେ ମୋ'ର ନଗ୍ନ ମୂର୍ତ୍ତି ଦେଖି ଭୟ ପାଇଗଲେ । ତା'ତ ହେବାର କଥା । ଏ ଅଞ୍ଚଳରେ ଗରମ ବେଳେ ମଧ୍ୟ ଲୋକେ ପୋଷାକ ପିନ୍ଧି ରହନ୍ତି । ଖୁବ୍ ଗରିବ ବ୍ୟତୀତ ଅନ୍ୟ କେହି ମଧ୍ୟ ଖାଲି ପାଦରେ ଚାଲନ୍ତି ନାହିଁ । ଗାଧୋଇ ସାରି ଲୁଗାପିନ୍ଧି ସରାଇକୁ ଫେରି ଆସିଲି । ସେତେବେଳେ ସରାଇକୁ ଅନେକ ଲୋକ ଆସିଥିଲେ କେବଳ ମୋତେ ଦେଖିବା ପାଇଁ । ଅନେକ ଭାରତବାସୀ ଗତ ମହାସମର ବେଳେ ଏ ପାଖକୁ ଲଢ଼ାଇ କରିବାକୁ ଆସିଥିଲେ, ଆଉ ତାଙ୍କ ମଧ୍ୟରୁ କେତେଜଣ ଏ ଅଞ୍ଚଳରେ ବାହା ସାହା ହୋଇ ଘରଦ୍ୱାର କରି ନେଇଛନ୍ତି । ତେବେ ସୁଦ୍ଧା ମୋତେ ଦେଖିବାର ଆଗ୍ରହ ମୂଳରେ ଥିଲା, ମୁଁ ମୁସାଫିର ଆଉ ନାସ୍ତିକ । କେହି ମୋତେ ସଲାମ୍ ଅଲେକମ୍ କଲେ ନାହିଁ, କାରଣ ଯାହାଙ୍କର ଅସ୍ତିତ୍ୱ ମୁଁ ସ୍ୱୀକାର କରେ ନାହିଁ—ସେ କିପରି ମୋତେ ଆଶୀର୍ବାଦ କରିବେ ! ଅବଦୁଲ୍ଲା ମୋତେ ବୁଝାଇ ଦେଇ କହିଲେ "ଏଥିପାଇଁ ସେମାନେ ଆପଣଙ୍କୁ 'ସଲାମତ୍' କହୁଛନ୍ତି ।" । ସଲାମତ୍ ଅର୍ଥ ଆଶୀର୍ବାଦ । ମୁଁ ତା'ର ଉତ୍ତରରେ କହିଥିଲି "ତୁମର ଆଶୀର୍ବାଦ ମୁଁ ଏକାନ୍ତ ଭାବରେ ଚାହେଁ, ଯାହାଙ୍କର ସତ୍ତା ଉପରେ ମୋ'ର କୌଣସି ବିଶ୍ୱାସ କିମ୍ବା ଜ୍ଞାନ ନାହିଁ ତାଙ୍କର ଆଶୀର୍ବାଦର ପ୍ରତ୍ୟାଶୀ ମୁଁ ଆଦୌ ନୁହେଁ । ଯେଉଁସବୁ ଲୋକ ରୁଣ୍ଡ ହୋଇଥିଲେ ତାଙ୍କ ମଧ୍ୟରେ ଅମୁସଲମାନ ଥିଲେ ବେଶୀ । ସେଇମାନେ ମୋତେ ଦେଖିବା ପାଇଁ ବେଶୀ ଉତ୍ସୁକ ହୋଇ ଉଠିଥିଲେ । ଅନେକ ଅବସିନୀୟ ମଧ୍ୟ ଏଇ ଗାଁରେ ରହନ୍ତି । ଅବସିନୀୟଗଣ ଆମ ଶିଖଙ୍କ ପରି ଦାଢ଼ି ନିଶ ରଖନ୍ତି କିନ୍ତୁ ହାତରେ ଲୁହାର ବଲା, ଛରବାସି ଆଉ 'ଅଣ୍ଡାରଓ୍ୟାର' (କାଛ)



ବ୍ୟବହାର କରନ୍ତି ନାହିଁ । ଅବସିନୀୟଗଣ ମୋତେ ଭଗବାନ ସମ୍ବନ୍ଧରେ ଅନେକ ପ୍ରଶ୍ନ କଲେ । କେତେବେଳେ ହେଲେ ସେମାନେ ଆଲ୍ଲାଶବ୍ଦ ବ୍ୟବହାର କରି ନାହାନ୍ତି । ସବୁବେଳେ 'ଖୋଦା' ବୋଲି କହୁଥିଲେ । ଏ ଅଞ୍ଚଳରେ ଆର୍ମେନୀୟ ଅଧିବାସୀଗଣ ମଧ୍ୟ ଆସି ବସବାସ କରୁଛନ୍ତି । ତାଙ୍କର ଚାଲିଚଳଣ ଠିକ୍ ଇଉରୋପୀୟଙ୍କ ପରି । ଘରର ଗଠନ ମଧ୍ୟ ଇଉରୋପୀୟ ଧରଣର । ଏମାନେ ଭୟଙ୍କର ଭାବରେ ଗୋ-ଖାଦକ ବୋଲି ଏ ଅଞ୍ଚଳରେ ଗୋ-ମାଂସର ଦାମ ଦୁଇଗୁଣ ବେଶୀ । ଶୂକର ମାଂସର କାରବାର ଏ ଅଞ୍ଚଳରେ ନାହିଁ କହିଲେ ଚଳେ । ଖ୍ରୀଷ୍ଟାନ ଆରବ ଆଉ ଆର୍ମେନୀଗଣ କେବଳ ଶୂକର ମାଂସ ବ୍ୟବହାର କରନ୍ତି ।

## ●ଦାସ ବ୍ୟବସାୟ●

ଦାସ ବ୍ୟବସାୟ ପୃଥିବୀରେ ଆଉ କେଉଁଠି ନାହିଁ ବୋଲି ଆମେ ଯେଉଁ ଧରି ଥାଉ, ତା ଠିକ୍ ନୁହେଁ । ବରଂ ପୁରାତନ ଦାସ ପ୍ରଥା ଉଠିଯାଇ ବର୍ତ୍ତମାନ ନୂତନ ଦାସ ପ୍ରଥାର ପ୍ରଚଳନ ହୋଇଛି । ଏହି ନୂତନ ଦାସ ପ୍ରଥା ସମ୍ବନ୍ଧରେ ଅନେକେ ଜାଣନ୍ତି ନାହିଁ । କେହି ଯାଞ୍ଚ କରନ୍ତି ନାହିଁ ଯେ ଆଖି ଆଗରେ ଯେଉଁ ଅତ୍ୟାଚାର ହେଉଛି ସେଇଟା ଦାସ ପ୍ରଥାର ଅନ୍ୟ ଗୋଟିଏ ସଂସ୍କରଣ । ସକାଳର ସୂର୍ଯ୍ୟୋଦୟ ଦେଖି ବିମର୍ଷ ମୁହଁରେ ଯେତେବେଳେ ବସାକୁ ଫେରୁଛି, ସେତେବେଳେ ଦେଖିଲି କେତେକ ଯୁବକ ରାତି ଗୋଟା ସିଲେଇ କାମ କରି ସକାଳସୁଦ୍ଧା ହାତର ଛୁଞ୍ଚିକୁ କାର୍ଯ୍ୟକ୍ଷମ ରଖିଛନ୍ତି । ତାଙ୍କର ଆଖି ଲାଲ ହୋଇ ଉଠିଛି, ମୁହଁ ଫିକା-

ପଡ଼ିଯାଇଛି, ଶରୀର ଦୁର୍ବଳ, ତେବେ ସୁନ୍ଦର ମୁହଁ ଉପରେ ନୂତନ ଯୌବନର ଛାପ ପରିସ୍ଫୁଟ ହୋଇ ରହିଛି । ସେମାନଙ୍କୁ ପଚାରି ବୁଝିଲି ଦିନଭିତରେ ସେମାନେ ପନ୍ଦର ଘଣ୍ଟା ଧରି କାମ କରନ୍ତି, ବାକି ସମୟ ଭିତରେ ଖିଆପିଆ କରି ଟିକିଏ ଶୋଇପଡ଼ନ୍ତି । ଏତେ ଅଳ୍ପ ସମୟ ମଧ୍ୟରେ ଖିଆପିଆ ଆଉ ଶୋଇ ବାହାରକୁ ବୁଲିଯିବାକୁ ଟିକିଏ ଯିବାକୁ ମଧ୍ୟ ସମୟ ପାଆନ୍ତି ନାହିଁ । ପୃଥିବୀର କେତେ ସ୍ଥାନରେ କେତେ ଶ୍ରମିକ ଏହିପରି ପେଟର ଦାଉରେ ପଡ଼ି ଅକାଳରେ ଯୌବନ ହରାଇ ବୃଦ୍ଧାବସ୍ଥାର ଆମନ୍ତ୍ରଣ କରୁଛନ୍ତି, କିଏ ତା'ର ହିସାବ ରଖୁଛି ! ଆମେ କହୁଛୁ ଯେ ଆମେ ଖୁବ୍ ସଭ୍ୟ ହୋଇ ଯାଇଛୁ, ଅଥଚ ଆଜି ଅନ୍ଧ, ଅସଭ୍ୟ ଧନୀଶେଠ ବୁଝିବାକୁ ଚେଷ୍ଟାମଧ୍ୟ କରେ ନାହିଁ ଯେ ମୁଠାଏ ଭାତ ପାଇଁ ତାହାରି ଦୂର ସମ୍ପର୍କୀୟ ଆତ୍ମୀୟ କିଣା-ଗୋଲାମ ହୋଇ ଜୀବନ ବିତାଉଛି । ଏମାନେ ଆରବ, ସେମାନଙ୍କ ସହିତ ଆମର କ'ଣ ସମ୍ବନ୍ଧ ? କିନ୍ତୁ ଏମାନେ ତ ଆଉ ପୃଥିବୀର ବାହାରେ ରହନ୍ତି ନାହିଁ । ସେମାନଙ୍କର ଦୁଃଖର ଦୀର୍ଘ-ନିଶ୍ୱାସ ଆରବର ମରୁଭୂମି ଅତିକ୍ରମକରି ପୃଥିବୀର ସର୍ବଶ୍ରେଷ୍ଠ ଉତ୍ପାଦିକାଶକ୍ତି ସମ୍ପନ୍ନ ସୁଜଳା, ସୁଫଳା, ଶ୍ୟାମଳ ଭୂମିରେ ଆସି ନିଶ୍ଚୟ ପହଞ୍ଚିବ । ଏହି କଠୋର ପରିଶ୍ରମ ପରିତ୍ୟାଗ କରି ଏମାନେ ଅନ୍ୟ କୌଣସି କାମ କାହିଁକି କରନ୍ତି ନାହିଁ ପଚାରି-ବାରୁ ଜଣେ କହିଥିଲା, "ତାଙ୍କର ଡେଣା ଭାଙ୍ଗିଯାଇଛି, ଆଉ ଉଡ଼ିବାର ଶକ୍ତି ନାହିଁ ।" ଯେଉଁ ଦେଶର କନ୍ୟାଗଣ ମଧ୍ୟ ବଡ଼ ଉତ୍ସାହୀ, ସାହସୀ ଆଉ ସ୍ୱାମୀର ପାର୍ଶ୍ୱରେ ଛିଡ଼ାହୋଇ ପିସ୍ତଲ, ବନ୍ଧୁକ ତଥା ବର୍ଚ୍ଛା ମାରିବାକୁ ମଧ୍ୟ ଖୁବ୍ ପାରଦର୍ଶୀ—ସେଇ ଦେଶର ଯୁବକ-ସମାଜର ଡେଣା ଭାଙ୍ଗି ଯାଇଛି, ସେମାନେ ଉଡ଼ିବାକୁ ଅକ୍ଷମ, ଏହା କଣ ଆଶ୍ଚର୍ଯ୍ୟର କଥା ନୁହେ ? ସେଥିକୁ ଦାସପ୍ରଥାର ଅନ୍ୟ ସଂସ୍କରଣ କହିବାକୁ ହେବ । ଧନୀ ସଂପ୍ରଦାୟ ପ୍ରଚଳିତ ଦାସପ୍ରଥାକୁ ଉଠାଇଦେଇ ଅନ୍ୟ ଭାବରେ ଦାସପ୍ରଥା

ଆରମ୍ଭ କରି ଦେଇଛନ୍ତି । ଏଇଟା ମଧ୍ୟ ଗୋଟିଏ ପ୍ରଗତି । ପୃଥିବୀର ସବୁ ଅଞ୍ଚଳରେ ଏହି ପ୍ରକାର ଦାସ ପ୍ରଥା ଦେଖିବାକୁ ମିଳେ. କିନ୍ତୁ ଆରବଦେଶରେ ଏହାର ପ୍ରଚଳନ କିପରି ଭାବରେ ସମ୍ଭବପର ହେଲା ପ୍ରକୃତରେ ଏହା ଭାବିବାର କଥା । ଆରବ ଦେଶର ବେଦୁଇନ୍‌ମାନଙ୍କ କଥା କବିଗୁରୁ ରବୀନ୍ଦ୍ରନାଥ ଯେ ଭଳି ଭାବରେ କହି ଯାଇଛନ୍ତି, ପୃଥିବୀର କୌଣସି କବି ସେ ଭଳି ଭାବରେ ଆରବର ଗୁଣ ଗାରିମା ଗାଇବାକୁ ସକ୍ଷମ ହୋଇ ନାହାନ୍ତି । କିନ୍ତୁ ଏହି ଆରବ ଜାତି ଭିତରେ ନାନାପ୍ରକାରର ଦାସତ୍ୱ ଦେଖି ମୁଁ ମନଭିତରେ କ୍ରମାଗତ ଆଘାତ ପାଉଥିଲି । ଭାରତବର୍ଷ ସହିତ ତୁଳନା କରି ସବୁ କଥା, ସବୁର ଗୁଣ ବୁଝିବାକୁ ଚେଷ୍ଟା କରୁଥିଲି, କିନ୍ତୁ ଆରବକୁ ଯାଇ ଭାରତବର୍ଷ କଥା ଏକାବେଳେକେ ଭୁଲିଗଲି । ଭାରତବର୍ଷର ଚିରନିର୍ଯ୍ୟାତିତ ଦରିଦ୍ର ହରିଜନଙ୍କ କଥା ସମ୍ପୂର୍ଣ୍ଣ ଭୁଲିଯାଇଥିଲି । ଯେଉଁମାନେ ଚିରନ୍ତନ ଭାବରେ ପଦଦଳିତ, ନିର୍ଯ୍ୟାତିତ, ତାଙ୍କରି ଦୋଷଗୁଣ ଯେତେ ସବୁବେଳେ ଚିନ୍ତା କରିବାକୁ ମଧ୍ୟ ଭଲ ଲାଗେ ନାହିଁ ।

ସନ୍ଧ୍ୟାପରେ ଗାଁ ବୁଲିବାକୁ ବାହାରି ହେଲି । ଗ୍ରାମବାସୀଗଣ ମୋତେ ଭଲ ଆଦର ଅଭ୍ୟର୍ଥନା ଦେଖାଇଲେ । ଆରବ ଜାତିର ସବୁ ଶ୍ରେଣୀର ଧର୍ମାବଲମ୍ବୀଙ୍କ ଘର ବୁଲି ଦେଖିଲି— ସମସ୍ତଙ୍କ ଅନ୍ତରର ବ୍ୟବହାର ଏକପ୍ରକାର । ମାଟିରେ ଚୁଲି କରି ରୋଷାଇ କରିବା, ମାଟିରେ ବସି ଖାଇବା ଏକ ପ୍ରଥା ସଭିଙ୍କର. କିନ୍ତୁ ନବାଗତ ଆର୍ମେନୀଗଣ ଆରବଦେଶକୁ ଆସି ମଧ୍ୟ ତାଙ୍କର ବୈଶିଷ୍ଟ୍ୟ ବଜାୟ ରଖିଛନ୍ତି । ଚୁଲିଗୁଡ଼ିକ ଚଟାଣର ଦୁଇହାତ ଉପରେ ସାହେବି ଧରଣରେ କରିଛନ୍ତି । ରୋଷାଇ ଘରେ ଟେବୁଲ ଚେୟାରର ବ୍ୟବସ୍ଥା ରହିଛି । ଆରବଗଣ ଯେଉଁପରି କାଠର ତକ୍ତା ଉପରେ ଶୁଅନ୍ତି ସେମିତି ବ୍ୟବସ୍ଥା ନାହିଁ—ପ୍ରତ୍ୟେ-



କଙ୍କ ଘରରେ ଲୁହାରଖଟ । ଖଟରେ କାହାରକୁ ବସିବାକୁ ଦିଅନ୍ତି ନାହିଁ । କିନ୍ତୁ ଅରବଗଣଙ୍କ ଖଟ ଉପରେ ଯେ କେହି ବସି-ପାରିବେ । ଆର୍ମାନୀଙ୍କ ଘର ଦେଖିଲେ ଏକ ଉନ୍ନତ ଧରଣର ସଭ୍ୟତାର ଗନ୍ଧ ବାରିହୁଏ । ଗାଁ ବୁଲି ଆସି ଯେତେବେଳେ ଘରଭିତରେ ବସିଲି ସେତେବେଳେ ସମସ୍ତଙ୍କ ଉତ୍ସୁକଦୃଷ୍ଟି ମୋ ଉପରେ ପଡ଼ିଲା । ମୁଁ ଗାଁ-ବୁଲି କ'ଣ ଅନୁଭବ କଲି ସେଇ କଥା କହିବସିଲି । ଯେତେବେଳେ ମୁଁ ଆର୍ମାନୀଗଣଙ୍କର ପ୍ରଶଂସା କରୁଥିଲି, ସେତେବେଳେ ଜଣେ କହି ଉଠିଲେ "ସେମାନେ ଯେ ଖ୍ରୀଷ୍ଟାନ୍" । ମୁଁ ଆଉ ସହି ପାରିଲି ନାହିଁ । ତେଣୁ କହିବାକୁ ବାଧ୍ୟ ହେଲି, "ଆପଣମାନଙ୍କ ଭିତରେ ମଧ୍ୟ ଖ୍ରୀଷ୍ଟାନ, ଇହୁଦୀ, ସୂର୍ଯ୍ୟ ଉପାସକ, ପଥର ଆଉ ପାଣିର ଉପାସକ ଅଛନ୍ତି, କାହିଁ ଆପଣମାନଙ୍କ ଭିତରେ ତ କୌଣସି ପ୍ରଭେଦ ଦେଖିଲି ନାହିଁ । ଜଣେ ସୁନ୍ନୀ ଯେମିତି ଘରେ ରହେ ଜଣେ ପାଣି ଉପାସକ ମଧ୍ୟ ତ ସେଇପରି ଘର କରିଛି, କିନ୍ତୁ ଯଦି ବିଚାର କରି ଦେଖିବେ ତାହା ହେଲେ ବୁଝିପାରିବେ ଆର୍ମେନୀଗଣ ଆପଣମାନଙ୍କଠାରୁ କେତେ ଉନ୍ନତ । ଆଉ ଗୋଟିଏ କଥା, ଆର୍ମାନୀଗଣ ପ୍ରଚୁର ଗୋମାଂସ ଖାଆନ୍ତି, ଆମ ଦେଶରେ ଗୋ ହତ୍ୟାପାଇଁ ହିନ୍ଦୁ ମୁସଲମାନ ଭିତରେ ଲଢ଼ାଇ ହୋଇଯାଏ । ମୁଁ ହିନ୍ଦୁର ପିଲା, ବର୍ତ୍ତମାନ ମଧ୍ୟ ମୁଁ ଗୋ ହତ୍ୟାକୁ ଘୃଣାକରେ । ତେବେ ମଧ୍ୟ ମୁଁ ଏଇ ସମ୍ପ୍ରଦାୟର ପ୍ରଶଂସା କରିବାକୁ ବାଧ୍ୟ ହେଉଛି । ଭଲକୁ ଯଦି ଭଲବୋଲି କହିବାକୁ ନ ଶିଖିଲି ତେବେ ଦେଶଭ୍ରମଣ କରି ମୋ'ର କ'ଣ ଲାଭ ହେଲା ? ଆପଣଙ୍କ ଦେଶକୁ ଆସିବାପରେ ମୁଁ ଯେ ଭଳି ଭାବରେ ଭଗବାନଙ୍କ ଅସ୍ତିତ୍ୱକୁ ଅସ୍ୱୀକାର କରିଛି ଠିକ୍ ସେଇ ଭଳି ଆମ ଦେଶରେ କରିଥିଲେ ମୋ'ର ସମ୍ପ୍ରଦାୟ ମୋତେ ବିପଦରେ ପକେଇବାକୁ ଚେଷ୍ଟା କରିଥାଆନ୍ତେ ନିଶ୍ଚୟ । ଆପ-ଣଙ୍କ ଏଇ ଉଦାରତାର କଥା ମୁଁ ମୋର ଦେଶବାସୀଙ୍କୁ ନିଶ୍ଚୟ

ଶୁଣାଇବ । ଭଲକୁ ଭଲ କହିବାକୁ ହେବ ବୋଲି ଧର୍ମର ଧମ-କକୁ ଭୟକଲେ ଚଳିବ ନାହିଁ ।”

ଆଜି ଭୋଜିର ଦିନ । ଗାଁ ଲୋକେ ନାନାପ୍ରକାର ପିଠା ପଣା କରି ମୋ ପାଇଁ ପଠାଇଲେ । ଅର୍ମାନୀଗଣ ପିଠା ନ ପଠାଇ ଅନେକ ପ୍ରକାରର ‘ପୁଡ଼ିଂ’ ପଠାଇଥିଲେ । ମୋ ବସାର ଅଧିକ ସେଇ ସବୁ ଜିନିଷରେ ଭରିଗଲା । ସବୁଯାକ ଖାଇବାକୁ ମୋର ବଡ଼ ଇଚ୍ଛା ହେଉଥିଲା, କିନ୍ତୁ ଯାହାର ଅତିଥି ହୋଇଛି ସେ ଯଦି ଖାଇବାକୁ ଅନୁମତି ନ ଦିଅନ୍ତି ତେବେ କୌଣସି ପ୍ରକାରେ ତ କିଛି ହେଲେ ଖାଇପାରିବି ନାହିଁ । ମୁଁ ତାଙ୍କର ପ୍ରତୀକ୍ଷାରେ ବସିରହିଲି । ଅନେକେ ଅନେକ କଥା ପଚାରିଲେ । ମୁଁ କାହାକୁ ଉତ୍ତର ନ ଦେଇ କେବଳ ଖାଇବା କଥା ଭାବି-ବାକୁ ଲାଗିଲି । ସେତେବେଳେ ଅନେକେ କହୁଥିଲେ, ମୁଁ ମୋର ମନଟାକୁ ଧେନି ସ୍ୱର୍ଗକୁ ଚାଲିଯାଇଛି କିନ୍ତୁ ସେମାନେ ବୁଝିବେ କେଉଁଠୁ ଯେ ସେତେବେଳେ ମୋ’ର ମନଟା ପ୍ରତ୍ୟେକ ପିଠାର ଭିତରେ ଭିତରେ ଖେଳି ବୁଲୁଥିଲା, ଆଉ ତାହାର ରୂପ, ରସର କଥା ଚିନ୍ତା କରୁଥିଲା ।

ଖାଇବା ସମୟ ହୋଇ ଆସିଲା । ବନ୍ଧୁ ଆସି ଆମର ଖାଇବା ସଜାଇ ଦେଇଗଲା । ମୁଁ ଆଗକରି ପିଠା ଆରମ୍ଭକଲି, ପ୍ରତ୍ୟେକ ପ୍ରକାର ପିଠାରୁ ଗୋଟିଏ ଲେଖାଏଁ ଖୁବ୍ ମନଯୋଗ ଦେଇ ଖାଇଲି, ଆଉ ଚିନ୍ତା କରୁଥିଲି ଆମଦେଶର ଆଉ ଆର-ବର ପିଠା ମଧ୍ୟରେ ପାର୍ଥକ୍ୟ କେଉଁଠି । ପ୍ରଭେଦ ଅଛି ବୋଲି ଆଦୌ ବୁଝାଗଲା ନାହିଁ । ପ୍ରଭେଦ ନ ରହିବାର ବା କାରଣ କ’ଣ ବୁଝିପାରିଲି ନାହିଁ । ଅବଦୁଲ୍ଲା ବାରମ୍ବାର ପିଠାକଥା ପଚାରିବାରୁ ମୁଁ କହିଥିଲି—ଆରବର ପିଠା ସହିତ ଆମ ଦେଶର ପିଠାର ଖୁବ୍ ସାମଞ୍ଜସ୍ୟ ଅଛି, ଏମିତି କି ଏହି ପିଠାରେ ଭାରତ-ବର୍ଷର ପରାଧୀନତାର ଗନ୍ଧ ମଧ୍ୟ ରହିଛି ।



ତତ୍‌କ୍ଷଣାତ୍ ଅବଦୁଲ୍ଲାଙ୍କ ମୁହଁ ଉପରେ ଅନେକଙ୍କ ଦୃଷ୍ଟି ଆସିପଡ଼ିଲା । ଭାବର ଆଦାନପ୍ରଦାନ ହେଲା । ତା'ପରେ ଅବଦୁଲ୍ଲା କହିଲେ, "ତାହା ହେଲେ ପିଠାଗୁଡ଼ିକ ଭଲ ହୋଇଛି ନିଶ୍ଚୟ ? ଆପଣ ଭଲ ଇଂରାଜୀ ଜାଣନ୍ତି ନାହିଁ ବୋଲି କଥାଟାକୁ ବୁଲେଇ କରି କହିଲେ .। 'ପରାଧୀନତା' ସ୍ଥାନରେ 'ସୁଗନ୍ଧ' ଶବ୍ଦର ବ୍ୟବହାର କରିବାର ଇଚ୍ଛା ଆପଣଙ୍କର ଥିଲା, ପେଟଭରି ପିଠା ଖାଇଛନ୍ତି ବୋଲି ଶବ୍ଦର ଅପ ପ୍ରୟୋଗ କରିଛନ୍ତି—ଏହା ନୁହେଁ କି'ଣ ?" "ମୁଁ ମଧ୍ୟ ସଙ୍ଗେ ସଙ୍ଗେ କହିଲି, ନିଶ୍ଚୟ ମୋ'ର ଭୁଲ ହୋଇଛି । ଇଂରାଜୀର କୋଉକଥାର କ'ଣ ମାନେ ହୁଏ ଅନେକ ସମୟରେ ମନେ ଥାଏ ନାହିଁ । ସୁତରାଂ ମୋ'ର ଭୁଲପାଇଁ କ୍ଷମା କରିବେ ନିଶ୍ଚୟ ?" ଏଇ କଥା ପଦକରେ ସମସ୍ତଙ୍କ ମୁହଁରେ ଶାନ୍ତଭାବ ଫେରି ଆସିବା ଦେଖି ମୁଁ ମଧ୍ୟ ଶାନ୍ତି ଅନୁଭବ କଲି ।

ଯାହାକୁ ଉଗ୍ରସାମ୍ରାଜ୍ୟବାଦ କୁହାଯିବ ନିଶ୍ଚୟ । ମୁହଁ ଖୋଲିଲି ତ ଗଲା । ଉଗ୍ରସାମ୍ରାଜ୍ୟବାଦ ସବୁଦେଶରେ ପ୍ରଚଳନ ହେବାର ଦରକାର ପଡ଼େ ନାହିଁ । ଯେଉଁ ଦେଶରେ ଏହି ଉଗ୍ର ସାମ୍ରାଜ୍ୟବାଦ ଦେଖାଯାଏ ସେହି ଦେଶ ଯେ ଅଦୂର ଭବିଷ୍ୟତରେ ବିଦ୍ରୋହ କରିବ ତା'ର ସୂଚନା ମିଳେ । ଅଳ୍ପ ଖାଇବାକୁ ବସି ତାହାର ଗୋଟିଏ ନମୁନା ଦେଖିଲି । ଆରବଗଣ ଗାଈ ନୁହନ୍ତି କି ଓଟ ମଧ୍ୟ ନୁହନ୍ତି । ଆରବଗଣ ଆରବ ମାତ୍ର । ବିଦ୍ରୋହ କରିବା ତାଙ୍କର ଜନ୍ମଗତ ଅଭ୍ୟାସ । ତାଙ୍କୁ ଦବାଇ ରଖିବାକୁ ହେଲେ ଉଗ୍ର ସାମ୍ରାଜ୍ୟବାଦର ବ୍ୟବହାର ସାମ୍ରାଜ୍ୟବାଦୀଗଣ ନିଶ୍ଚୟ କରିବେ ଅତଏବ ଦେଶ ଅଳ୍ପ ଖଣ୍ଡ ଖଣ୍ଡରେ ବିଭକ୍ତ ହୋଇ ନାନା ଶ୍ରେଣୀର ଉଗ୍ର ସାମ୍ରାଜ୍ୟବାଦୀଙ୍କ ଦ୍ୱାରା ଶାସିତ ହେଉଛି, ତେବେ ସୁଦ୍ଧା ଆଶା ରହିଛି ଯେ ଆରବଜାତି ଆଉ ବେଶୀଦିନ ପରାଧୀନ ହୋଇ ରହିବେ ନାହିଁ ।

ଭାଷାକୁ ନେଇ ମଣିଷର ଜାତି ନିର୍ଣ୍ଣୟ ହୁଏ । ଆରବଦେଶର ସବୁଠାରେ ଆରବୀ ଭାଷା ଚଳେ । ସୁତରାଂ ଆରବଜାତି ଧନେ ସମ୍ମିଳିତ ହେବେ । ଅନେକେ କହିପାରନ୍ତି ଯେ ଇଂରାଜୀ ଆଉ ଆମେରିକାନ୍‌ଗଣ ଏକଭାଷା କହନ୍ତି, ସେମାନେ ସମ୍ମିଳିତ ହୋଇ ରହିନାହାନ୍ତି କାହିଁକି ? ତା'ର ପ୍ରଥମ କାରଣ ହେଉଛି ଭୌଗଳିକ ବିଭିନ୍ନତା, ଆଉ ଧନେ ଜଣେ ଦିନେ ଶାସକ ଆଉ ଅନ୍ୟଜଣକ ଶାସିତ । ଆମେରିକାନ୍‌ଗଣ ଯେତେବେଳେ ତାଙ୍କର ପୁରୁଣା ଘାଆର ଦାଗ ଦେଖିବେ ସେତେବେଳେ ସେମାନେ ନିଶ୍ଚୟ ଶାସକ ଓ ଶାସିତର ପ୍ରଭେଦ ବୁଝିପାରୁଥିବେ । ଆରବଜାତି ମଧ୍ୟରେ ବର୍ତ୍ତମାନ ମଧ୍ୟ 'କ୍ଲାନ' (ଗୋଷ୍ଠି) ପ୍ରଥା ରହିଛି; ସୁତରାଂ ଶାସକ ଓ ଶାସିତର କଥା ଏ ସ୍ଥାନରେ ଆସିପାରିବ ନାହିଁ । ଆରବ ଭାଷାଭାଷୀଙ୍କୁ ସ୍ୱାଧୀନ ସରକାର ସଂଗଠନ କରି ରହିବାର ବେଳ ଆଗେଇ ଆସୁଛି ।

ବଡ଼ ଗାଁଟିରେ ଅନେକ କଥା ଦେଖିଲି, ଅନେକ ଅନୁଭବ କଲି । ଆଉ ଆଗକୁ ଯିବାକୁ ଇଚ୍ଛା ହେଲା ନାହିଁ । ଅବଦୁଲ୍ଲାର ଜଣେ ଲୋକଙ୍କୁ ସାଙ୍ଗରେ ନେଇ ନିକଟସ୍ଥ ରେଲ୍‌ଷ୍ଟେସନକୁ ଯାଇ ଟିକଟ କିଣି ବାଗଦାଦ ଆଡ଼କୁ ଚାଲିଲି । ବିଦାୟ ପୂର୍ବରୁ ଅବଦୁଲ୍ଲା ମୋତେ ଆଲିଙ୍ଗନ କରି କହିଲେ— ବାଗଦାଦ ଯାଇ ଯେପରି ଆପଣା ଆଖିରେ ବାଗଦାଦ ଦେଖିବ । ପର ଆଖିରେ କୌଣସି ଜିନିଷ ଦେଖିବା ମୋ'ର ଅଭ୍ୟାସ ବିରୁଦ୍ଧ ଥିଲା । ସୁତରାଂ ମୋ'ର ଇଚ୍ଛାନୁରୂପ ବାଗଦାଦ ଦେଖିବାକୁ ସକ୍ଷମ ହୋଇଥିଲି । କିନ୍ତୁ ଯାହା ଦେଖିବାକୁ ହୁଏ ଆଉ ଯେତେ ଶୁଣିବାକୁ ମିଳେ ସବୁତକ ଲେଖି ବସିବା ସମ୍ଭବପର ହୁଏ ନାହିଁ ।



## ବାଗ୍‌ଦାଦ୍

ଚାରିଆଡ଼େ ଉଚ୍ଚନୀଚ ପ୍ରାନ୍ତର—ତା'ର ଭିତରେ ରେଲ ପଥ ଚାଲି ଚାଲି ଯାଇଛି । ରେଲ ଯାତ୍ରା ସେତେ ଆରାମଦାୟକ ନଥିଲା । ରେଲଗାଡ଼ି କଂକଂରିଲ ଭୂଇଁ ଉପରେ ଚାଲିଥିଲା । ଦିନପହରେ ଗୋଟିଏ ପରିତ୍ୟକ୍ତ କଙ୍କରିଲ ଭୂମି ଭେଦ କରି ଗାଡ଼ି ଯାଇ ବାଗଦାଦ ଷ୍ଟେସନରେ ଛିଡ଼ା ହେଲା । ଷ୍ଟେସନର ଲଗେଜରୁମ୍‌ରୁ ସାଇକେଲ ଆଣି ପରୀକ୍ଷା କରି ଦେଖିଲି ସବୁ ଠିକ୍ ଅଛି । ଅନେକ ଦିନର ପୁରୁଣା ପ୍ରିୟ ବନ୍ଧୁର ବିଚ୍ଛେଦପରେ ପୁଣି ପାଇ ମନଟା ଆନନ୍ଦରେ ଭରି ଉଠିଲା । ପିଠି ଝୋଲଟା ସାଇକେଲରେ ବାନ୍ଧି ସହର ଭିତରକୁ ଚାଲିଲି । ବାଁ ପାଖରେ ରାଜପ୍ରାସାଦ । ରାଜପ୍ରାସାଦର ଚାରିପାଖରେ ସୁନ୍ଦର ଫୁଲ ବଗିଚା । ପୀଚ ଢଳା ରାସ୍ତା । ସାଇକେଲ ଚଲାଇବାକୁ ବଡ଼ ଆରାମ ଲାଗେ । ଅଳ୍ପ ସମୟ ଭିତରେ ମୋଦୀପୋଲ ପାଖରେ ଆସି ପହଞ୍ଚିଲି । ପୋଲ ପାରି ହେବାକୁ ହେଲେ ଟେକ୍ସ ଦେବାକୁ ପଡ଼େ । ମୁଁ ମଧ୍ୟ ଟେକ୍ସ ଦେଲି । ପୋଲଟା ଦେଖିବାକୁ ବଡ ସୁନ୍ଦର । ତଳରେ ଇତିହାସ ପ୍ରସିଦ୍ଧ ଟାଇଗ୍ରୀସ୍ ନଦୀ ବୋହି ଯାଉଛି । ନଦୀରେ ନାନାପ୍ରକାର ଦର୍ଶନୀୟ ବସ୍ତୁଥିଲା । ଅନେକ ସମୟ ଛିଡ଼ା ହୋଇ ସେଇ ସବୁ ଦେଖିବାକୁ ଲାଗିଲି । ନଦୀରେ ବଡ଼ ବଡ଼ ହାଣ୍ଡି ବାନ୍ଧି ଗୋଟିଏ ପ୍ରକାର ଭେଲା ତିଆରି ହୁଏ । ସେହି ଭେଲା ଉପରେ ଲୋକ ବସି ନଦୀ ପାରି ହେଉଥାନ୍ତି । କେତେ ଗୁଡିଏ ବଡ଼ ହାଣ୍ଡି ମଧ୍ୟ ଦେଖିଲି । ସେଇ ହାଣ୍ଡି ଭିତରେ ଲୋକବସି ହାତ ସାହାଯ୍ୟରେ ନଦୀ ପାରି ହେଉଥାନ୍ତି । ଦୃଶ୍ୟଟା ମୋ ପାଖରେ ନୂଆ ନଥିଲା । ଆମ ଗାଁରେ ମଧ୍ୟ ଏହିପରି ବଡ଼ ବଡ଼ ହାଣ୍ଡି ସାହାଯ୍ୟରେ ଗରିବ ଲୋକମାନେ ବର୍ଷା ସମୟରେ ନଦୀନାଳ ପାରି ହେଉଥିଲେ । ବର୍ତ୍ତମାନ ବାଲିଛ ଦଳର କୃପାରୁ ସେହି ସବୁ 'ଅର୍ଣ୍ଣବ ପୋତ'ର ବ୍ୟବ-

ହାର ଲୋପ ପାଇ ଅଛି । ପୃଥିବୀ ବିଖ୍ୟାତ ହାରାଣ୍ ଉଲ୍ ରସିଦର ସହରରେ ବର୍ତ୍ତମାନ ମଧ୍ୟ ସେଇ ସନାତନ ପ୍ରଥା ରହିଛି ଦେଖି ମୋ'ର ହଠାତ୍ ଗାଁ କଥା ମନେ ପଡ଼ିଯାଇଥିଲା ।

ମୋହି ବ୍ରିଜ୍ ପାର ହୋଇ ବଡ଼ରାସ୍ତାରେ ପହଞ୍ଚିବା ଆଗରୁ ,ଜଣେ ସିନ୍ଧିଙ୍କ ସହ ଦେଖା ହେଲା । ସେ ଜଣେ ବ୍ୟବସାୟୀ । ରହିବା ସ୍ଥାନର ସନ୍ଧାନ ତାଙ୍କ ପାଖରୁ ନେଇ ପ୍ରଧାନ ସଡ଼କ ଉପରକୁ ଆସି ଆର୍ଯ୍ୟ ସମାଜ ମନ୍ଦିର ଆଡ଼କୁ ଚାଲିଲି । ଆର୍ଯ୍ୟ ସମାଜର ଘରଟି ଅଳ୍ପ ଦୂରରେ । 'ମେନ୍ ରୋଡ଼ର' ବାଁ ପାଖକୁ ତିନୋଟି ଗଳି ଅତିକ୍ରମ କରି ଚତୁର୍ଥ ଗଳିରେ ପଶି ଟିକିଏ ଆଗକୁ ଯାଇ ଆର୍ଯ୍ୟସମାଜର ଘର ଦେଖିବାକୁ ପାଇଲି । ଦୁଇମହଲା ସୁନ୍ଦର ନୂଆ କୋଠା ତିଆରି ହୋଇଛି । ଯେଉଁମାନେ ରାଜନୀତି ଯୋଗେ ମୁଣ୍ଡ ବୁଲାନ୍ତି ନାହିଁ ସେଇମାନେ ଧର୍ମ ମନ୍ଦିର ତିଆରି କରି ଶାନ୍ତି ପାଆନ୍ତି । ମୁଁ ସେଇ ଶାନ୍ତିର ଭାଗ ନେବାକୁ ଯାଇ ଦେଖିଲି—କୋଠାର ଦୁଆର ବନ୍ଦ । ବହୁତ ଡ଼କାହକା କଲା ପରେ ଜଣେ ଲୋକ ବାହାରିଲେ । ସେ ଜାତିରେ ଇରାଣୀ, ଅବସ୍ଥାରେ ମୋଗଲ ଆଉ ଧର୍ମରେ ହିନ୍ଦୁ । ଲୋକଟି ଦେଖିବାକୁ ପରିଷ୍କାର ପରିଚ୍ଛନ୍ନ । ଦେଖା ହେବା ମାତ୍ରକେ ସେ ଉର୍ଦ୍ଦୁରେ କେତେକ କଥା ପଚାରି ଦୁଆର ଖୋଲି ଦେଲେ । ସେ କହିଲେ, ଯେଉଁଠାରେ ମୁଁ ଯଦି ରହେ ତାହା ହେଲେ ଅନେକ ଲୋକ ମୋତେ ବେଖାତିରି କରିବେ । କାରଣ ଏ ଦେଶରେ ଆର୍ଯ୍ୟ ସମାଜ ସ୍ଥାପିତ ହେବାପରେ ହିନ୍ଦୁମାନଙ୍କ ଭିତରେ ଜାତିଭେଦ ଭାବ ଆସି ଯାଇଛି । ଏଇ ସହରର କୌଣସି ଆରବ ମୋତେ ଆଉ ସହାନୁଭୂତି ଦେଖାଇବ ନାହିଁ । ବରଂ ଆରବଗଣ ଏ ଦେଶରୁ ହିନ୍ଦୁମାନଙ୍କୁ ତଡ଼ିବାକୁ ବିଚାର କରିଛନ୍ତି । ସୁତରାଂ ହିନ୍ଦୁମାନଙ୍କ ସାହାଯ୍ୟ ଉପରେ ମୋତେ ଯଦି ନିର୍ଭର କରିବାକୁ ପଡ଼େ ତାହା ହେଲେ ଏଠାରେ ରହିବା ଅଦୌ



ସୁଛସଙ୍ଗତ ନୁହେ । ବର୍ତ୍ତମାନ୍ କଥା ଶୁଣି ମୁଁ ଚମତ୍କୃତ ନହୋଇ ତାଙ୍କୁ ଧନ୍ୟବାଦ ଜଣାଇ କରମର୍ଦ୍ଦନ କରି ଆଉ ତା'ର ଉପଦେଶ ମାନ ପୁଣି ଆଗକୁ ଚାଲିଲି ।

ଟାଇଗ୍ରୀସ୍ ନଦୀ କୂଳରେ ଜଣେ ବଡ଼ଦାଗୀ ଓଭରସିଅର ରହୁଥିଲେ । ତାଙ୍କର ସ୍ତ୍ରୀ ବଙ୍ଗାଳି ଘର ଝିଅ । ସୁତରାଂ ତାଙ୍କର ଘରକୁ ଯିବାର ସିଦ୍ଧାନ୍ତ କରି ପୁଣି ମେନରୋଡ଼ ଧରି ଚାଲିଲି । ମେନ୍‌ରୋଡ଼ ଟା କଲିକତା ଭାବରେ ଇଂରାଜ ନାମ ପାଇଲା ଏକଥା ଜାଣିବାକୁ ମୋର ଆଉ ସମୟ ନଥିଲା । ପ୍ରାୟ ତିନିମାଇଲ ରାସ୍ତା ଅତିକ୍ରମ କରି ବାଁ ପାଖକୁ ବୁଲିଲି । ଏଣିକି ଆଉ ବାଟ ନାହିଁ କହିଲେ ଚଳେ । ଆରବ ଗାଁ ଭିତରେ ଯେଉଁ ସରୁ ବାଟ ଥାଏ ତା'ର ଦୁଇ ପାଖରେ ଖଜୁରି ଗଛ ଥାଏ । ଏଠାରେ ମଧ୍ୟ ଖଜୁରି ଗଛ ଥିଲା କିନ୍ତୁ କାଟି ଦିଆ ହୋଇଛି । ଅତି କଷ୍ଟରେ ଭାରତୀୟ ଭଦ୍ରଲୋକଙ୍କ ଅଫିସରେ ଯାଇଁ ପହଞ୍ଚିଲି । ସେ ଦୟାକରି ମୋ'ର ରହିବାର ବନ୍ଦୋବସ୍ତ କରିଦେଲେ । ତାଙ୍କ କଥା ଭିତରେ ପୂର୍ଣ୍ଣମାତ୍ରାରେ ପ୍ରାଦେଶିକ ଭାବ ରହିଥିଲା । ଏହିପରି ଲୋକଙ୍କ ଭିତରେ ପ୍ରାଦେଶିକ ଭାବ ରହିବା ସ୍ୱାଭାବିକ । ପ୍ରାଦେଶିକତାର କଥା ଭୁଲି ଯାଇ ଟିକିଏ ବିଶ୍ରାମ ନେବାପାଇଁ ଶୋଇପଡ଼ିଲି । ସେତେବେଳକୁ ପୁଣି ଦିପହରର ଖରା ନାଁ ହୋଇ ଉଠୁଥିଲା ।

ଓପରଓଳି ଗାଧୋଇ ସାରି ଟାଇଗ୍ରୀସ୍ ନଦୀ କୂଳରେ ଯାଇ ବସିଛି ଜଣେ ବଙ୍ଗାଳି ଭଦ୍ରଲୋକ ଜାଲ ଘେନି ନଦୀକୁ ମାଛ ଧରିବାକୁ ଆସିଲେ । ଭଦ୍ରଲୋକ ବଙ୍ଗାଳି ମୁସଲମାନ । ପ୍ରଥମ ଜାଲ ପକାଇବା ପରେ ବଡ଼ ବଡ଼ ପ୍ରାୟ ଦଶବାରଟା ପୁଟି ମାଛ ଧରା ପଡ଼ିଲେ । ଦିଶାୟ ଅରତ ଅ ...ର ବେଶୀ । କୂଳରେ ବସି ମୁଁ ମାଛଧରା ଦେଖୁଥିଲି । ଲାଲମୁହଁ ବାବୁ ଅଫିସରୁ ମାଛ ଧରା ଦେଖି ଡାକି କହିଲେ—ଆମ ଘରକୁ ଜଣେ ବଙ୍ଗାଳି



ଅତିଥି ଆସିଛନ୍ତି, ମାଛ କେତେଟା ଦେଇଯିବ । ବଙ୍ଗଳା କଥା ଶୁଣି ଚଟ୍ଟଗ୍ରାମର ଭଦ୍ରଲୋକ ଆରବୀ ଭାଷାରେ କ'ଣ କହିଲେ କିଛି ବୁଝି ପାରିଲି ନାହିଁ । ତନ୍ମୟ ହୋଇ କେବଳ ମାଛଧରାର ଦୃଶ୍ୟ ଦେଖିଲି । ଭଦ୍ରଲୋକ ପାଖରେ ଯେଉଁ ବେଗ୍‌ଟା ଥିଲା ସେଇଟା ମାଛରେ ଭର୍ତ୍ତି ହୋଇଗଲା । ପରେ ଭଦ୍ରଲୋକ ନଦୀକୂଳ ରାସ୍ତାଧରି ଚାଲିଗଲେ—ଗୋଟିଏ ବୋଲି ମାଛ ଦେଇ ଗଲେ ନାହିଁ । ମାଛ ଗୁଡ଼ିକ ବଡ଼ ଲୋଭନୀୟ ଥିଲା । ସେଥିପାଇଁ କିଛି ଦେଇ ନଯିବା ଯୋଗୁ ମୋ'ର ବଡ଼ ରାଗ ହେଲା । ଓପରଓଳା ଯେତେବେଳେ ବୁଲି ବାହାରୁଛି, ସେତେବେଳେ ଲାଲମୁହାଁ ମୋତେ ଡାକି କହିଲେ, ସନ୍ଧ୍ୟାରେ ମୋ'ର ନିମନ୍ତ୍ରଣ ଅଛି, ଯେମିତି ଶୀଘ୍ର ଶୀଘ୍ର ଫେରି ଆସିବ ।

ସେଦିନ ସନ୍ଧ୍ୟାବେଳେ ବେଶୀ ଦୂର ନଯାଇ ନିକଟସ୍ଥ ଗୋଟିଏ ଆର୍ମାନୀ ପଡ଼ାର କାଫେରେ ଯାଇ ବସିଲି । ଆର୍ମାନୀଗଣ ଦେଖିବାକୁ ୟୁରୋପୀୟଙ୍କ ପରି, କିନ୍ତୁ ତାଙ୍କ କାଫେକୁ କଳା-ଲୋକଗଲେ କୌଣସି ଅଭଦ୍ର ବ୍ୟବହାର କରନ୍ତି ନାହିଁ । ଆର୍ମାନୀଗଣ ଆରବ ଓ ଇହୁଦୀ ମାନଙ୍କ ସହିତ ସଦ୍‌ଭାବ ରଖିବାକୁ ଖୁବ୍ ସଚେଷ୍ଟ । ଆରବଗଣ ମଧ୍ୟ ତାଙ୍କୁ ବନ୍ଧୁ ବୋଲି ମନେ କରନ୍ତି । ପରସ୍ପରର ଏହି ଭାବର ଗୋଟିଏ କାରଣ ମଧ୍ୟ ରହିଛି । ଉଭୟ ଜାତିଙ୍କ ମଧ୍ୟରେ ତୁରୁକ୍ ବିଦ୍ୱେଷ ବଡ଼ ପ୍ରବଳ । ଭାରତର ଲୋକେ ଧାରଣା କରି ପାରିବେ ନାହିଁ ଯେ ଆରବଗଣ

ରୀତି

କାଫେରେ, ଅରବୀ ଗୀତ ହେଲାପରେ ଅର୍ମାନୀଗୀତ ହେଲା । ତାପରେ ଆରମ୍ଭ ହେଲା ଏକପ୍ରକାର କୌତୁକ ଯାହାକୁ ଇଉରୋପୀୟ ଧରଣର ନାଚ ବୋଲି କହିବାକୁ ହେବ । ମୁଖା ପିନ୍ଧି ଦୁଇଜଣ ଲୋକ ଛିଡ଼ା ହୋଇ କିଛି ସମୟ ଅଭିନୟ କରି ଚାଲିଗଲା ପରେ ଜଣେଲୋକ ମଞ୍ଚରୁ ଥାଳିଟିଏ ଧରି ଓହ୍ଲାଇ ଆସି ସମସ୍ତଙ୍କ ଆଗକୁ ଥାଳିଟି ବଢ଼ାଇ ଧଇଲା । ଯାହାର ଯାହା ଇଚ୍ଛାହେଲା ସେ ତାହା ଥାଳରେ ପକାଇ ଦେଲା ପରେ ପୁଣି ସେ ମଞ୍ଚକୁ ଫେରିଗଲା । ଲକ୍ଷକରି ଦେଖିଲି କେହି ଦଶ ଫିଲସ୍‌ରୁ ବେଶୀ ଦେଇ ନାହାନ୍ତି । ଏଇପରି ଭାବରେ ତା'ର ଦଶବାର ଶିଲିଂ ହୋଇଗଲା । ଅର୍ମାନୀ ରେସ୍ତୋଁରାକୁ ଆରବଗଣ ଆସି ଦୁଇପଇସା ଖରଚ ମଧ୍ୟ କରନ୍ତି ।

ଅର୍ମାନୀ ରେସ୍ତୋଁରାରୁ ଫେରି ଆସି ଚଟ୍ଟଗାଁର ଭଦ୍ରଲୋକଙ୍କ ଘରକୁ ଗଲି । ତାଙ୍କର ଘରଟା ଗୋଟିଏ ଗଳି ଭିତରେ । ବାଗଦାଦରେ ଗଳି-ରହିବା ଯେପରି ସମସ୍ତେ ପସନ୍ଦ କରନ୍ତି ମୁଁ ମଧ୍ୟ ସେଇପରି ପସନ୍ଦ କରେ । ଦୋ'ପହରଆ ଖରାରେ ଯେତେବେଳେ ପ୍ରଧାନ ରାସ୍ତା ଗୁଡ଼ିକରେ ଚାଲିବା ଅସମ୍ଭବ ହୋଇପଡ଼େ ସେତେବେଳେ ଏହି ଗଳି ରାସ୍ତା ଗୁଡ଼ିକରେ ଚାଲିବାକୁ ଆରାମ ଲାଗେ । ରାତିରେ କିନ୍ତୁ ଏହି ଗଳି ଗୁଡ଼ିକରେ ଯିବା ଆସିବା କରିବାକୁ ଟିକିଏ କଷ୍ଟ ହୁଏ । ମୋ ସଙ୍ଗରେ ଲୋକ ଥିବାରୁ ମୁଁ ଅବଶ୍ୟ କଷ୍ଟ ପାଇନାହିଁ । ଗଳି ଗୁଡ଼ିକ ବେଶ୍ ଆରବ୍ୟ ରଜନୀର ପରିଚୟ ଦେଇଥାଏ । ଦେଶୀୟ ଭଦ୍ର ଲୋକଙ୍କ ଘର ସମ୍ମୁଖରେ ପହଞ୍ଚି ଆମେ ଛିଡ଼ା ହେଲୁ । ମୋ'ର ସାଥୀ ଦୁଆରର କଡ଼ାକୁ ଦୁଇଥର ମାତ୍ର ହଲାଇଲେ । କିଛି ସମୟ ପରେ ଜଣେ ଲୋକ ଆସି ଦ୍ୱାର ଖୋଲି ଦେଇ ବାହାରକୁ ଚାଲିଗଲା । ଆମେ ଭିତରକୁ ଯାଇ ଦ୍ୱାର ବନ୍ଦ କରିଦେଲୁ । ବାଗଦାଦ୍‌ରେ ପ୍ରତ୍ୟେକ ଘରର ସଦର ଦ୍ୱାର




ଖୋଲିବା ପାଇଁ ଏହି କଡ଼ା ହଲାଇବାର କେତେକ ବିଶିଷ୍ଟ ନିୟମ ଅଛି । କାହାରି ଘରରେ ଦୁ'ଥର ପୁଣି କାହାରି ଘରରେ ତିନିଥର କଡ଼ା ହଲାଇବାକୁ ପଡ଼େ । ଅପରିଚିତ ଲୋକ କଡ଼ା ହଲାଇ ବାରେ ଭୁଲ କରନ୍ତି ବୋଲି କେହି ଦ୍ୱାର ଖୋଲନ୍ତି ନାହିଁ । କୌଣସି ଅତିଥି ପହଞ୍ଚିଲେ ତା'ର ରହିବା ଓ ଖାଇବାର ବ୍ୟବସ୍ଥା ତଳମହଲରେ ହୁଏ । ଆମ ପାଇଁ ମଧ୍ୟ ତଳମହଲରେ ଖାଇବାର ବ୍ୟବସ୍ଥା ହୋଇଥିଲା । ନିମନ୍ତ୍ରିତ ଭଦ୍ର ବ୍ୟକ୍ତିମାନଙ୍କ ଭିତରେ ମୁଁ ଏକା ଥିଲି ବିଦେଶୀ, ଆଉ ସବୁ ଆରବ । ଚଟ୍ଟଗାଁ ଭଦ୍ରଲୋକ ଆରବଗଣଙ୍କୁ ଏତେ ଭୟ କରୁଥିଲେ ଯେ, ମୋ ପାଖକୁ ଆସି କହିଲେ, ଖାଇବା ଆଗରୁ ମୁଁ ଯେପରି ବିସ୍ମିଲ୍ଲା ବୋଲି କହିବି । ସେ ଜାଣି ନଥିଲେ ଯେ ମୁଁ ଆରବଙ୍କ ଆଚାର ବ୍ୟବହାର ସହିତ ସୁପରିଚିତ । ଆରବଗଣ ବଡ଼ ଉଦାର । ନମାଜ ପଢ଼ ବା ନ ପଢ଼, ବିସ୍ମିଲ୍ଲା କୁହ ବା ନ କୁହ, ତୁମେ ଯେ ଜଣେ ମୁସାଫିର ସେମାନେ ଏତିକି ଜାଣିଲେ ହେଲା । ଯେଉଁ ସବୁ ଲୋକ ଉପସ୍ଥିତ ଥିଲେ ସମସ୍ତେ ଇଂରାଜୀ ଜାଣି-ଥିବାରୁ ମୋ'ର ସୁବିଧା ହୋଇଥିଲା ବେଶୀ । ଦେଶ ବିଦେଶର ନାନା କଥା ଆଲୋଚନା କରି ଆମେ ସମୟ କଟାଇଥିଲୁ । ଆସର ସଭା ସୁନ୍ଦର ଜମି ଉଠିଲା । ଶାନ୍ତିରେ ମାଛ ଭଜା, ମାଛ ତରକାରି ଆଉ ଅନ୍ୟାନ୍ୟ ଆରବୀ ଖାଦ୍ୟ ଖାଇ ବସାକୁ ଫେରି ଆସିଲି । ମୋତେ ପହଞ୍ଚାଇ ଦେବା ପାଇଁ ଚଟ୍ଟଗାଁର ଭଦ୍ରଲୋକ ସାଙ୍ଗରେ ଆସିଥିଲେ । ବାଟରେ ମୋତେ ପଚାରିଲେ, ଆପଣ ତ ମୁସଲମାନ ନୁହନ୍ତି, ତେବେ ମଧ୍ୟ ଏମାନେ ଆପଣଙ୍କୁ ଆଜି ଯେଉଁ ସମ୍ମାନ ଦେଖାଇଲେ ଆଜି ପର୍ଯ୍ୟନ୍ତ କୌଣସି ସ୍ଥାନୀୟ ଭାରତୀୟଙ୍କୁ ଏପରି ସମ୍ମାନ ଦେଖାଇ ନାହାନ୍ତି । ମୁଁ ତା'ର ଉତ୍ତରରେ କହିଥିଲି—ଏଠାରେ ଧର୍ମର କଥା କେବେ ବେଳେବେ ଉଠନ୍ତୁ । ସେମାନେ ଜଗତର ଖବର ଜାଣିବାକୁ ଉତ୍ସାହୀ ଥିଲେ । ମୁଁ ତାଙ୍କର ସେ ବାସନା ପୂର୍ଣ୍ଣ କରି ପାରିଥିଲି । ନିମନ୍ତ୍ରିତ







ଭଦ୍ର ଲୋକଗଣ ମୋତେ ଦେଶ ବିଦେଶର ସମ୍ବାଦ ବାହକ ଭାବରେ ଗ୍ରହଣ କରିଛନ୍ତି । ଦେଖିଲେ ନାହିଁ, କିପରି ସେମାନେ ମଧ୍ୟ ମୋ ପରି ଖାଇବାକୁ ଆରମ୍ଭ କରି ମୋହର ପରି ଶେଷ-କଲେ । ଯେଉଁମାନେ ଗଢ଼ନ୍ତି, ସେହିମାନେ କେବଳ ଭାଙ୍ଗି ପାରନ୍ତି । ଯେଉଁମାନେ ଗଢ଼ି ପାରିବେ ନାହିଁ, ମାତ୍ର ଅନ୍ୟର ପ୍ରସ୍ତୁତ ଘରରେ ରହିବେ ସେମାନଙ୍କର ଭାଙ୍ଗିବାର ମଧ୍ୟ ଅଧିକାର ନାହିଁ । ଯଦି କେବେ ଭାଙ୍ଗନ୍ତି, ତା ହେଲେ ଦଣ୍ଡ ପାଆନ୍ତି, ଜୋରିମାନା ଦିଅନ୍ତି । ଆପଣଙ୍କର ମଧ୍ୟ ସେହି ଅବସ୍ଥା । ଆରବଗଣ ଇସ୍‌ଲାମ ଧର୍ମର ନିୟମ କାନୁନ୍‌କୁ ଅବହେଳା କରିବାକୁ ସକ୍ଷମ ହୁଅନ୍ତି, କାରଣ ସେମାନଙ୍କର ପୂର୍ବ ପୁରୁଷ ଇସ୍‌ଲାମ ଧର୍ମର ଭିତ୍ତି ସ୍ଥାପନ କରିଛନ୍ତି । ଆପଣ ହିନ୍ଦ, ଆପଣ ଇସ୍‌ଲାମ ଧର୍ମ ମାନି ଚଳିବାକୁ ଅଧିକାର ପାଇଛନ୍ତି ମାତ୍ର, ଅବହେଳା କରିବାକୁ ଅଥବା ଇସଲାମ ଧର୍ମକୁ ଅବମାନନା କରିବାର ଅଧିକାର ଆପଣଙ୍କର ନାହିଁ ।

ଗତ ମହା ସମର ବେଳେ ବ୍ରିଟିଶ ଫଉଜ ବାଗ୍‌ଦାଦରେ ପହଞ୍ଚି ପ୍ରଚାର କଲେ ଯେ ସେମାନେ ଆରବ ଦଖଲ କରିବାକୁ ଆସି ନାହାନ୍ତି । ଆସିଛନ୍ତି ତୁରୁକ୍‌ମାନଙ୍କ ନାଗପାଶରୁ ଆରବକୁ ମୁକ୍ତ କରିବାକୁ । ଆରବ ଗଣ ତାଙ୍କ କଥା ଉପରେ ବିଶ୍ୱାସ କରି ସୁଖୀ ହେଲେ । ସେମାନେ ଦେଖିଲେ ରାଜା ଫେଇଜଲ ଠାରୁ ଆରମ୍ଭ କରି ସାଧାରଣ ଚୌକିଦାର ପର୍ଯ୍ୟନ୍ତ ତାଙ୍କର ଲୋକେ ସରକାରୀ ଅଫିସ ଗୁଡ଼ିକ ଦଖଲ କରି ବସି-ଅଛନ୍ତି । ଲିଗ୍ ଅଫ୍‌-ନେଶନରେ ତାଙ୍କର ମଧ୍ୟ ନାମ ରହିଯାଇଛି । ତାଙ୍କର ରାଷ୍ଟ୍ର, ଦୂତ ନାନା ଦେଶକୁ ଯାଇଛନ୍ତି । ଆଉ କ'ଣ ଦରକାର ? କେତେକ ଲୋକ ଏଇ କଥାରେ ଭୁଲିଗଲେ । ଯେଉଁମାନେ ଏଇଥିରେ ଭୁଲି ରହିଲେ, ସେମାନେ ହିନ୍ଦଙ୍କ ପ୍ରତି ଲାଲ ଆଖି ଦେଖାଇ କହିଲେ—"ବାହାରି ଯାଅ

ଅମର ଦେଶରୁ ।" ହିନ୍ଦମାନେ ମଧ୍ୟ ସେଇପରି ପ୍ରାଣୀ, ଯେମାନେ ତାଙ୍କର ପ୍ରଭୁଙ୍କର ପାଦ ଧରି ପଡିରହିଲେ । ଫମା ସ୍ୱାଧୀନତା ପାଇ ଯେଉଁମାନେ ଅନନ୍ଦିତ ହୋଇ ଉଠିଥିଲେ ସେମାନେ ଦେଖିଲେ ଶକ୍ତିଶାଳୀ ଇଂରାଜଙ୍କ ସହିତ କଥା କହିବା ତ ଦୂରୁହ ବ୍ୟାପାର. ସୁତରାଂ ହିନ୍ଦମାନଙ୍କୁ ବହିଷ୍କୃତ କରିବା ନିହାତ ଦରକାର । ବହିଷ୍କୃତ ଅରମ୍ଭ ହୋଇଗଲା । ଅନେକ ହିନ୍ଦ କ୍ଷତଗ୍ରସ୍ତ ହେଲେ । ଅନେକ ହିନ୍ଦ ସ୍ୱେଚ୍ଛାରେ ଇରାକ ଛାଡି ଦେଶକୁ ଫେରି ଆସିଲେ । ଦେଶକୁ ଯେଉଁମାନେ ଫେରି ଆସିଲେ ସେମାନେ ପ୍ରାୟ ସମସ୍ତେ ମୁସଲମାନ । ଦେଶକୁ ଫେରି ଅରବଙ୍କ ବିରୁଦ୍ଧରେ ସେମାନେ ପଦାଏ କଥା ବି କହିଲେ ନାହିଁ—ସେଥିପାଇଁ ଦେଶବାସୀ ମଧ୍ୟ କେହି ଜାଣି ପାରିଲେ ନାହିଁ, କାହିଁକି ସେମାନେ 'ବସରା' ଛାଡ଼ି ଚାଲି ଆସିଲେ ।

ବ୍ରିଟିଶ୍ ସ୍ୱାର୍ଥ ବ୍ରିଟିଶ୍ କେବେହେଲେ ଛାଡ଼ି ନାହିଁ । ବ୍ରିଟିଶ୍ କହିଥିଲା ଅରବଙ୍କୁ ସ୍ୱାଧୀନତା ଦେବ, ଲୋକ ଦେଖାଣିଆ ସ୍ୱାଧୀନତା ଇରାଣୀମାନଙ୍କୁ ଦେଇଥିଲା ମଧ୍ୟ— କିନ୍ତୁ ନିଜର ସ୍ୱାର୍ଥ ଷୋଳ ଅଣା କାଏମ୍ ରଖି । ବସରା ବାଗଦାଦ୍ ରେଲ ଲାଇନ ଆଉ ମୁସଲର ତେଲ ଖଣିରେ ବ୍ରିଟିଶ୍ ଭଲ ଭାବରେ ମାଡ଼ିବସିଲା । ରାଜା ଫୈଜଲଙ୍କୁ ସିଂହାସନରେ ବସାଇଥିଲେ ଇଂରାଜ, ସୁତରାଂ ଏ ବିଷୟରେ ନଡ଼ଚଡ଼ ହେବାର କ୍ଷମତା ତାଙ୍କର ନଥିଲା । କୌଣସି ଅପ୍ରୀତିକର ଛାଯାଁ ଲୋକେ କରିବାକୁ ଚାହାନ୍ତି ନାହିଁ, ଇଂରାଜ ମଧ୍ୟ ତାହା ପସନ୍ଦ କରେ ନାହିଁ । ସେଇଥି ପାଇଁ ରାଜା ଫୈଜଲଙ୍କୁ ସାକ୍ଷୀ ଗୋପାଳ କରି ଦେଶ ଶାସନ କରା ହେଉଥିଲା । ଆଉ ମୁସଲର ତେଲ ଖଣିରୁ ବିଦେଶକୁ ତେଲ ପଠାଇ ମୋଟା ରୋଜଗାର କରି ନେଉଥିଲେ, ଆଉ ଭବିଷ୍ୟତ ଯୁଦ୍ଧର ବିଶିଷ୍ଟ

ଉପକରଣ ବେନ୍‌କ୍ଲନ୍ ପଦ୍ଧର ଦେଉଥିଲେ । ଇରାକର ସ୍ୱାଧୀନତାର ନମୁନା ଏତକରେ ଯଥେଷ୍ଟ !

ବାଗଦାଦ୍ ପହଞ୍ଚିଥିଲା ପରେ ମୁଁ ଅର୍ଯ୍ୟ ସମାଜର ଦରବାନ ସହିତ ପ୍ରାୟ ସାକ୍ଷାତ କରୁଥିଲି, ଅଉ ଯେଉଁ ସବୁ ବିଷୟ ଭଲ ଭାବରେ ବୁଝି ପାରୁ ନଥିଲି ତା'ର ମିମାଂସା ସେ କରିଦେଉଥିଲା । ଇରାକ୍‌ରେ ଯେତେବେଳେ ହିନ୍ଦୁବିଦ୍ୱେଷଭାବ ଭଲ ଭାବରେ ଜାଗି ଉଠିଥିଲା । ଇରାଣୀଗଣ ହିନ୍ଦୁ ଦେଖିଲେ ଥିର ଉଠୁଥିଲେ । ବାଗଦାଦ୍‌ରେ ଗୋଟିଏ ହିନ୍ଦୁ ରେସ୍ତୋରାଁ ଥିଲା । ତାର ମାଲିକ ଜଣେ ଶିଖ । ଶିଖ ଯେତେବେଳେ ଦେଖିଲା ଯେ ସେ ମୁସଲମାନ ନୁହେ ବୋଲି ତା' ରେସ୍ତୋରାଁକୁ ଅରବଗଣ ଆସୁ ନାହାନ୍ତି ସେତେବେଳେ ସେ ତାର ରେସ୍ତୋରାଁକୁ ଜଣେ ପଞ୍ଜାବୀ ମୁସଲମାନ ପାଖରେ ବିକି କରିଦେଲା । ପଞ୍ଜାବୀ ମୁସଲମାନ ପଗଡ଼ି ଛାଡ଼ି ଫେଜ୍ ମୁଣ୍ଡରେ ପିନ୍ଧି ରେସ୍ତୋରାଁରେ ବସିଲେ । ସେ ଭାବିଥିଲେ ଭାରତୀୟ ମୁସଲମାନଙ୍କୁ ଅରବ ମୁସଲମାନ ଟିକିଏ ଭଲ ଦୃଷ୍ଟିରେ ଦେଖିବ । କିନ୍ତୁ ଫଳ ହେଲା ଓଲଟା । ଅରବ ଗ୍ରାହକ ଅସିଲେ ନାହିଁ—ବରଂ ହିନ୍ଦୁ ରେସ୍ତୋରାଁ ଯେପରି ଉଠିଯାଏ । ସେଥିପାଇଁ ସେଇ ଘରର ମାଲିକକୁ ଅନେକ କଥା କହି ଭୟ ଦେଖାଇଲେ । ଘରର ମାଲିକ ଶେଷରେ ହିନ୍ଦୁକୁ ଘର ଛାଡ଼ିଦେବା ପାଇ ନୋଟିଶ୍ ଦେଲା । କିଛିଦିନ ଭିତରେ ହିନ୍ଦୁରେସ୍ତୋରାଁ ଉଠିଯିବାକୁ ବାଧ୍ୟ ହେଲା ।

ଭାରତବର୍ଷର ରେଲ୍‌ଷ୍ଟେସନ ଗୁଡ଼ିକରେ ଯେପରି ହିନ୍ଦୁ ଚା, ଜଳଖିଆ ପାନବିଡ଼ି ଦୋକାନ ଅଉ ମୁସଲମାନ ଚା', ଜଳଖିଆ, ପାନବିଡ଼ି ଦୋକାନ ସାଇନବୋର୍ଡ ଦ୍ୱାରା ଚିହ୍ନିତ ଥାଏ—ବାଗଦାଦରେ ସେଇପରି ଜଣେ ଗୁଜରାଟି ମୁସଲମାନ ସାଇନବୋର୍ଡ ଟାଙ୍ଗି ତାଙ୍କ ଦୋକାନକୁ ଚିହ୍ନିତ କରିଥିଲେ ।




ଦିନେ ବାଗ୍‌ଦାଦର ଗୋଟିଏ ଛୋଟ ଗଳି ଭିତରେ ଯାଉଥିଲି —ହଠାତ୍ ଶୁଣିଲି, ପଛରୁ ଯେପରି କେହି ମୋତେ ଡାକୁଛି । ପଛକୁ ଫେରି ଚାହିଁଲି—ଦେଖିଲି ସତରେ ମୋତେ ଜଣେ ଡାକୁଛନ୍ତି । ସାଇକେଲ୍ ଫେରାଇ ତାଙ୍କ ପାଖକୁ ଚାଲିଲି । ଲୋକଟି ଜାତିରେ ଗୁଜରାଟୀ, ଅବୟବରେ ଦ୍ରାବିଡ଼, ଧର୍ମରେ ସିହା ମୁସଲମାନ । ସେ ମୋତେ ଡାକିନେଇ ତାଙ୍କ ଦୋକାନରେ ବସାଇଲେ । ଆଉ ଗୋଟିଏ ଛୋଟ କାଚର ଥାଳିରେ କିଛି ଲହୁଣୀ ଆଉ ଚିନି ଖାଇବାକୁ ଦେଇ କହିଲେ "ତମେ ମୁସାଫିର ଏକଥା ମୁଁ ଜାଣେ ।" ଗୁଜୁରାଟୀ ଭାଷାରେ 'ତୁ' କିମ୍ବା ଆପଣ ବ୍ୟବହାର ନ ହୋଇ 'ତମେ' ଶବ୍ଦଟି ବ୍ୟବହାର ହୁଏ । ଗୁଜୁରାଟୀ ଲୋକଟି ତା'ର ଦ୍ୱାର ସମ୍ମୁଖର ସାଇନ୍‌ବୋର୍ଡ ଆଡ଼କୁ ହାତଦେଖାଇ କହିଲା, "ଏ ଦେଶରେ ଧର୍ମକୁ ନେଇ ଜାତି ସଂଗଠିତ ହୁଏ ନାହିଁ, ଭାଷାକୁ ନେଇ ଜାତି ହୁଏ । ମୁଁ ଜଣେ ସିହା, ଏ କଥା ସାଇନ୍‌ବୋର୍ଡରେ ଲେଖାଅଛି । ଏ ଅଞ୍ଚଳରେ ଯେତେଲୋକ ଅଛନ୍ତି ସମସ୍ତେ ସିହା ସଂପ୍ରଦାୟର । ସେମାନେ ସମସ୍ତେ ମୋ ଦୋକାନରୁ ଲହୁଣୀ କିଣି ମୋତେ ସାହାଯ୍ୟ କରିବେ ବୋଲି ଭାବିଥିଲି, କିନ୍ତୁ କେହି ମୋ ଦୋକାନକୁ ଆସନ୍ତି ନାହିଁ କି କଥା ମଧ୍ୟ କହନ୍ତି ନାହିଁ । ଏଥର ଦେଶକୁ ଫେରିଯାଇ ବ୍ୟବସାୟ ଆରମ୍ଭ କରିବି ବୋଲି ଭାବୁଛି । ପରଦେଶରେ ବ୍ୟବସାୟ କରିବା କିପରି ବିପଦଜନକ ଏଥର ଭଲ ଭାବରେ ବୁଝିପାରୁଛି ।" ଏହା କହି ସେ କିଛିକ୍ଷଣ ମୋ ଆଡ଼କୁ ଚାହିଁ ରହିଲା । ସେ ଭାବିଥିଲା ଏ ବିଷୟରେ ମୁଁ କିଛି କହିବି, କିନ୍ତୁ ମୁଁ ଏକାବେଳକେ ତା'କଥା ଭୁଲି ଯାଇଥିଲି । ମୁଁ ଭାବୁଥିଲି ହିନ୍ଦୁମାନଙ୍କର ବର୍ଜନଶୀଳ ମନୋବୃତ୍ତିର କଥା । ହିନ୍ଦୁଗଣ ଯଦି ବର୍ଜନଶୀଳ ନ ହୁଅନ୍ତି ତେବେ ଏଇ ଦରିଦ୍ର ବାଧ୍ୟହୋଇ ପରକୁ ଆପଣା କରିବାକୁ ଯାଇ ଏଇପରି ବିପଦରେ ପଡ଼ନ୍ତା ନାହିଁ । ମୁହଁ ଖୋଲି ସେଇ ବ୍ୟବସାୟୀକୁ

କହିଲି—ଏ ତ ପରଦେଶ, ଦୁଃଖ କରି ଲାଭ କିଛି ନାହିଁ । ବରଂ ଦେଶକୁ ଫେରିଯାଇ ବ୍ୟବସାୟ ବାଣିଜ୍ୟ କରିବା ଖୁବ୍ ଭଲ । ମୋ କଥାରେ ତା'ର ମନ ମାନିଲା ନାହିଁ । ସେ 'ବନ୍ଦେ-ମାତରମ୍' ବୋଲି ଚିତ୍କାର କରିବାକୁ ଲାଗିଲା । ଆରବଗଣ ବୁଝିଲେ ଏହି ଲୋକଟିର ମଧ୍ୟ ଜାତୀୟ ଶ୍ଲୋଗାନ ଅଛି । ମୁଁ ଆଉ ବେଶୀ ସମୟ ତା' ଦୋକାନରେ ନ ବସି ମେନ୍‌ରୋଡ଼ ଉପରକୁ ଚାଲି ଆସିଲି ।

ଜାପାନୀ ମାଞ୍ଚୁରିଆ ଦଖଲକରି ମାଞ୍ଚୁଗଣଙ୍କୁ ସ୍ୱାଧୀନ କରିଥିଲା । କିନ୍ତୁ ମାଞ୍ଚୁରିଆର ପ୍ରତି ଅଫିସରେ ଜଣେ ଲେଖାଏଁ ଜାପାନୀ ଅଫିସର ରଖିବାକୁ ବାଧ୍ୟ କରିଥିଲା । ଏଇଠି ଥିଲା ଜାପାନର ବଡ଼ ଭୁଲ । ବ୍ରିଟିଶ ସାମ୍ରାଜ୍ୟବାଦୀ ସେପରି ଭୁଲ୍ କିଛି କରି ନାହାନ୍ତି । ସେମାନେ ଏଠାରେ ପ୍ରତି ଅଫିସରେ ତାଙ୍କର ନିଜର ଲୋକ ନ ରଖି ସୁଦ୍ଧା ଏପରି ଭାବରେ ଶାସନ କଳ ଠିକ୍ ରଖିଥିଲେ ଯାହା ସାଧାରଣ ଲୋକ ବୁଝିପାରିବେ ନାହିଁ । ଏଠାରେ ଗୋଟିଏ ବ୍ରିଟିଶ୍ ରାଜଦୂତର ଅଫିସ ରହିଛି । ସେଇ ଅଫିସରେ ବସି ଦଉଡ଼ି ଟଣା ହେଲେ ପ୍ରତ୍ୟେକ ଆରବ ଅଫିସର ସେଇ ଦଉଡ଼ିଟଣାରେ ଉଠୁଥିଲେ ବସୁଥିଲେ । କେହି ବୁଝନ୍ତି ନାହିଁ ଯେ ରାଜା ଫୈଜଲ ମଧ୍ୟ ହେନେରି ପୁଇଁ ପରି ଜଣେ ସାକ୍ଷୀକୁଣ୍ଢେଇ ରାଜା । ଏଇଠାରେ ବ୍ରିଟିଶ୍ ସାମ୍ରାଜ୍ୟନୀତିର ପରି-ପକ୍ୱତା ଦେଖାଯାଏ, ଆଉ ଜାପାନୀ ସାମ୍ରାଜ୍ୟନୀତିର ଅନଭିଜ୍ଞତା ମଧ୍ୟ ଅନୁଭବ ହୁଏ । ମୁଁ ଜଣେ ପର୍ଯ୍ୟଟକ । ଏତେ ଗଭୀର ତଥ୍ୟ ସଂଗ୍ରହ କରିବା ମୋର କାମ ନୁହେଁ, ତେବେ ସୁଦ୍ଧା କେହି ଯଦି ମୋ କାନ ପାଖକୁ ସମ୍ବାଦ ଆଣିଦିଏ—ତେବେ ଶୁଣିବାକୁ ଦୋଷ କ'ଣ ?

ଦୋଷଗୁଣରୁ ଅତୀତ ହୋଇ ବାଗ୍‌ଦାଦର ଏକମାତ୍ର ଦୈନିକ ଇଂରାଜୀ ସମ୍ବାଦପତ୍ର ଅଫିସକୁ ଯାଇଥିଲି । ସେଇ




ସମ୍ବାଦପତ୍ରରେ, ମୋର ଗୋଟିଏ ବକ୍ତୃତା ପ୍ରକାଶ ପାଇଥିଲା— କିନ୍ତୁ ବକ୍ତୃତାଟି ଏତେ ଖରାପ ହୋଇଥିଲା ଯେ ମୋତେ ମଧ୍ୟ ପଢ଼ିବାକୁ ଭଲ ଲାଗୁ ନ ଥିଲା । ଏହା ଫଳରେ ମୋ'ର ଲାଭ ହୋଇଥିଲା ନିଷ୍ଚୟ । ଶିକ୍ଷିତ ଆରବ ମହଲ ବୁଝି ପାରିଥିଲେ ମୁଁ ସତରେ ସ୍ୱାଧୀନ ଭାବରେ ବିଦେଶ ଭ୍ରମଣରେ ବାହାରିଛି । ମୋ ସମ୍ବନ୍ଧରେ ସେଇ ସମ୍ବାଦ ପ୍ରକାଶ ପାଇଲା ପରଠାରୁ ଶିକ୍ଷିତ ଆରବଗଣ ମୋତେ ଖୋଜି ବାହାର କରୁଥିଲେ, ଆଉ ଦେଶ ବିଦେଶର ସମ୍ବାଦ ମୋଠାରୁ ଶୁଣୁଥିଲେ ।

ବାଗ୍‌ଦାଦ ପୁରୁଣା ସହର । ଅନେକେ ଏଇ ସହର ସମ୍ବନ୍ଧରେ ବଡ଼ ବଡ଼ ବହି ଲେଖିଛନ୍ତି । ମୋ ଆଖିରେ କିନ୍ତୁ ବାଗଦାଦର ରୂପଗରିମା କିଛି ଧରି ପଡ଼ିଲା ନାହିଁ । ବଡ଼ ବଡ଼ ମସ୍‌ଜିଦର ମିନାର ଗୁଡ଼ିକ ଦୂରରୁ ବଡ଼ ସୁନ୍ଦର ଦେଖାଯାଏ କିନ୍ତୁ ଯେତେବେଳେ ବଡ଼ ବଡ଼ ମସ୍‌ଜିଦର ଗୃହପାଖରେ ଦେଶର ଦରିଦ୍ରଲୋକ ଭିକାରି ଝୁଲି ଧରି ଅସହାୟ ଦୃଷ୍ଟି ଦେଇ ଘୁରି ବୁଲୁଥିବାର ଦେଖେ ସେତେବେଳେ ସେହି ବଡ଼ ବଡ଼ ମିନାରର କଥା ଭୁଲିଯାଇ ଦରିଦ୍ରର ସମସ୍ୟାକୁ କେନ୍ଦ୍ର-କରି ଚିନ୍ତା କରି ବସେ । ସେତେବେଳେ ମୁଁ ଯେଉଁ ସବୁକଥା ଭାବୁଥିଲି—ତା'ର କୌଣସି ଥଳକୂଳ କିନ୍ତୁ ନ ଥିଲା । ଯେତେବେଳେ ବୁଲି ବୁଲି ପରିଶ୍ରାନ୍ତ ହୋଇ ପଡ଼ୁଥିଲି ସେତେବେଳେ ବଡ଼ ବଡ଼ "କାଓ୍ୱା" ରେ ଯାଇ ନୀରବରେ ବସୁଥିଲି । ଏଠାରେ କାଫେର ଅନ୍ୟ ନାମ ହେଉଛି 'କାଓ୍ୱା' । ଦିନେ ଦି'ଦିନ କାଓ୍ୱା ମଧ୍ୟ ଖାଇଛି । ବାଗ୍‌ଦାଦର ଆରବ-ଗଣ କଫିରେ ଦୁଧ କିମ୍ବା ଚିନି ବ୍ୟବହାର କରନ୍ତି ନାହିଁ । ସେଥିପାଇଁ କଫି ପିଇବାକୁ ଟିକିଏ କଡ଼ା ଜଣାଯାଏ । ଯାହାର ଅଭ୍ୟାସ ନ ଥିବ ସେ ଏଠାର କାଓ୍ୱା ଖାଇ ପାରିବ ନାହିଁ । ମୁଁ କାଓ୍ୱାରେ ଚିନି ମିଶାଇ ଦେବାକୁ କହେ । ବସୁ ମୋ

କଥା ଜାଣେ ବୋଲି ଚିନ୍ତା ମିଶାଇ ଦେଉଥିଲା, ଆଉ ସେଥିପାଇଁ ମୋତେ ଅଧିକ ତର୍କ ଦେବାକୁ ପଡ଼ି ନ ଥିଲା ।

ବାଗ୍‌ଦାଦରେ ଇଉରୋପର ନାନାଜାତିର ଲୋକ ଦେଖିବାକୁ ମିଳନ୍ତି । ସମସ୍ତେ ଏଠାକୁ ବାଣିଜ୍ୟ ସୂତ୍ରରେ ଆସିଛନ୍ତି । ନବାଗତମାନଙ୍କ ମଧ୍ୟରେ ଇଉରୋପୀୟ ଇହୁଦୀଙ୍କ ସଂଖ୍ୟା ବେଶୀ । ଏମାନେ ଖୁବ୍ ସ୍ୱଳ୍ପଭାଷୀ ଆଉ ବ୍ୟବସାୟରେ ଖୁବ୍ ଅଭିଜ୍ଞ । କିନ୍ତୁ ବାଗ୍‌ଦାଦରେ ଇହୁଦୀ ଆଉ ଭାରତୀୟଙ୍କ ଏକ ଅବସ୍ଥା । ଏମାନଙ୍କୁ କେହି ଦେଖି ସହି ପାରନ୍ତି ନାହିଁ । ଇହୁଦୀ ଶିକ୍ଷିତ ଆଉ ଭାରତବାସୀ ଅଶିକ୍ଷିତ । ଏଠାରେ ଶିକ୍ଷିତ ଆଉ ଅଶିକ୍ଷିତର କୌଣସି ପ୍ରଭେଦ ନାହିଁ । ଅଶିକ୍ଷିତ ଆରବ ନିଜ ଦେଶ ପାଇଁ ନିର୍ବିକାର ଭାବରେ ପ୍ରାଣ ବଳିଦେବାକୁ ଆଗେଇ ଆସେ ବୋଲି ବିଶ୍ୱବାସୀ ଆରବଗଣଙ୍କୁ ଆରବର ବାସିନ୍ଦା ବୋଲି ମାନି ନେଇଛନ୍ତି, କିନ୍ତୁ ଇହୁଦୀଙ୍କୁ ଆରବର ବାସିନ୍ଦା ବୋଲି ମାନି ନେବାକୁ କେହି ରାଜି ନୁହନ୍ତି । ଏଠାରେ କେତେକ ନାତ୍‌ସିପନ୍ଥୀ ଇହୁଦୀଙ୍କ ସହିତ ମୋର ଦେଖା ହୋଇଥିଲା । ସେମାନେ ପ୍ରକୃତରେ ଶିକ୍ଷିତ ଏବଂ ବ୍ରିଟିଶର ଅନୁଗ୍ରହପ୍ରାର୍ଥୀ ନୁହନ୍ତି । ସେମାନେ ସବୁ ଜର୍ମାନୀ ଛାଡ଼ି ଚାଲି ଆସିଛନ୍ତି । ପୁଣି ଜର୍ମାନୀକୁ ଫେରିଯିବା ତାଙ୍କର ଏକାନ୍ତ ଇଚ୍ଛା । ପାଲେଷ୍ଟାଇନ୍‌ରେ ବ୍ରିଟିଶର ଅନୁଗ୍ରହ ପ୍ରାର୍ଥୀ ହୋଇ ରହିବାକୁ ସେମାନେ ଏକାବେଳକେ ପସନ୍ଦ କରୁନାହାନ୍ତି । ମୁଁ ଯେତେବେଳେ ସେମାନଙ୍କୁ ପଚାରିଲି ଯେ କିପରି ଭାବରେ ଆଉ କେବେ ସେମାନେ ଜର୍ମାନୀକୁ ଫେରିଯାଇ ପାରିବେ, ସେମାନେ କହିଥିଲେ, ଯେଉଁ ଦିନ ବ୍ରିଟିଶ ଏଜେଣ୍ଟ ହିଟ୍‌ଲର ଜର୍ମାନୀ ଛାଡ଼ିବ ସେଇଦିନ ସେମାନେ ଜର୍ମାନୀକୁ ଅନାୟାସରେ ଫେରିଯିବେ । ରାଜନୀତି ବୁଝିବା ବଡ଼ କଠିନ ସମସ୍ୟା । 'ବ୍ରିଟିଶ ଏଜେଣ୍ଟ ହିଟ୍‌ଲର' କଥା ପଦକ ମୋତେ ସେତେବେଳେ ବାତୁଳର

ପ୍ରଳାପ ପରି ମନେ ହୋଇଥିଲା, କିନ୍ତୁ ଯେଉଁଦିନ ଲୋକଗଣ ହାତ ଉଠାଇଲେ ସେହିଦିନ ଭାବିଥିଲି ହିଟ୍‌ଲର ସାମ୍ରାଜ୍ୟବାଦୀ ବ୍ରିଟିଶର ଏଜେଣ୍ଟ ନ ହେଲେ ମଧ୍ୟ ମିତ୍ର ତ ନିଶ୍ଚୟ ! କାଳର ଗତି କି କୁଟିଳ !

ବାଗ୍‌ଦାଦରେ ଅମେରିକାମାନଙ୍କର ଗୋଟିଏ ସୈନ୍ୟଦଳ ଅଛି । ସେହି ସୈନ୍ୟଦଳଟି ଦେଖିବାକୁ ବଡ଼ ଇଚ୍ଛାହେଲା । ଦିନେ ହିନାଇଡି ନାମକ ସ୍ଥାନରେ ରହିବାକୁ ଯାଇଥିଲି । ସେଠାରେ ଅନେକ ଭାରତୀୟ କିରାଣୀ ମଧ୍ୟ ରହନ୍ତି । ସର୍ବପ୍ରଥମ ଭାରତୀୟ କିରାଣୀମାନଙ୍କ ସହିତ ଦେଖାକଲି । ତାଙ୍କ ସହିତ ଦେଖା କଲାବେଳେ ଗୋଟିଏ ଦୁର୍ଘଟଣା ଘଟିଥିଲା । ଜଣେ ଭାରତୀୟ କିରାଣୀ ତା'ର ଜଣେ ବନ୍ଧୁ ଘରକୁ ମୋତେ ଡାକି ନେଇଥିଲେ । ବନ୍ଧୁଘରର ଦ୍ୱାର ପାଖରେ ପହଞ୍ଚି ଆମେ ବାହାରେ ଛିଡ଼ା ହେବାକୁ ବାଧ୍ୟ ହେଲୁ । କାରଣ ସେତେବେଳେ ଘର ଭିତରେ ସ୍ୱାମୀ ସ୍ତ୍ରୀଙ୍କ ଭିତରେ କଳି ଲାଗି ଯାଇଥିଲା । ସ୍ୱାମୀ ସ୍ତ୍ରୀ ବଙ୍ଗଳାରେ କଥା କହୁଥିଲେ । ସ୍ତ୍ରୀଙ୍କର ଆକ୍ଷେପ ଥିଲା ଯେ 'ବାବିଲୋନ୍‌ରେ ଯାହା ଅଛି ପୃଥିବୀର ଅନ୍ୟ କେଉଁଠାରେ ଏପରି ସୁନ୍ଦର ଦର୍ଶନୀୟ ବସ୍ତୁ ନାହିଁ ।' ସ୍ୱାମୀଙ୍କର ଉତ୍ତର ଥିଲା—ବାବିଲୋନରେ ଘୋଡ଼ାଡିମ୍ବ ଅଛି । ସେଇ ଘୋଡ଼ାଡିମ୍ବ କି ଭଳି ପଦାର୍ଥ ମୋ'ର ମଧ୍ୟ ଦେଖିବାକୁ ଇଚ୍ଛାହେଲା, କିନ୍ତୁ ସେ ଇଚ୍ଛା ସେତେବେଳେ ଦମନ କରିବାକୁ ବାଧ୍ୟ ହେଲି, କାରଣ ପୃଥିବୀରେ ଏପରି ଅନେକ ଦର୍ଶନୀୟ ପଦାର୍ଥ ଅଛି—ସେ ସବୁର ଖବର କିଏ ରଖୁଛି ! କିରାଣୀ ସଙ୍ଗରେ ଦେଖା ହୋଇଥିଲା । ପୁଣି ବାଗ୍‌ଦାଦକୁ ଫେରି ଆସିଲା ପରେ କେତେକ ଭଦ୍ରଲୋକଙ୍କ ଅନୁରୋଧରେ ପୂର୍ବର ମତ ବଦଳାଇ ବାବିଲୋନ ଦେଖିବାକୁ ଯାଇଥିଲି ।

କିରାଣୀମାନଙ୍କଠାରୁ ବିଦାୟ ନେଇ ଅମେରିକାମାନଙ୍କ ବାରିକ୍‌କୁ ଯାଇଥିଲି । ବାରିକ୍ ଗୁଡ଼ିକ ଭାରତୀୟଙ୍କ ବାରିକ୍-



ପର । ଯେଉଁମାନେ ଏହି ବାସ୍‌ରେ ରହନ୍ତି ତାଙ୍କ ଆଡ଼କୁ ଗ୍ୱହିଁଲେ ଜଣାଯାଏ ଯେପରି ତାଙ୍କ ମନ ଭିତରେ ସବୁବେଳେ ଗୋଟାଏ ଦୁଃଖର ଛାପ ମରା ରହିଛି । ତୁରୁକ୍‌ଗଣ ଆର୍ମିନୀ-ମାନଙ୍କ ଉପରେ ଅତ୍ୟାଗ୍ୱର କରି ତାଙ୍କୁ ତାଙ୍କ ଦେଶରୁ ତଡ଼ି ଦେଇଥିଲେ । ଆର୍ମିନୀସ୍ଥାନର ଯେଉଁ ଅଞ୍ଚଳଟି ସୋଭିୟେଟ୍‌ର ଅନ୍ତର୍ଗତ ଥିଲା ଏବଂ ସେଠାରେ ଯେଉଁମାନେ ବାସକରି ରହୁ-ଥିଲେ ତାଙ୍କ ମଧ୍ୟରୁ ଅନେକେ ଭଗବାନ ଏବଂ ଜାର୍‌କୁ ବଞ୍ଚାଇ ରଖିବା ପାଇଁ ବ୍ରିଟିଶର ଶରଣାପନ୍ନ ହୋଇଥିଲେ । ଏଇ ଦୁଇ ପ୍ରକାର ପଳାତକଙ୍କୁ ନେଇ ବର୍ତ୍ତମାନର ଆର୍ମିନୀ ପଲ୍‌ଟଣ ଗଢ଼ା ହୋଇଥିଲା ।

## ● ବସୋରା ପଥେ ●

ବାଗ୍‌ଦାଦ୍‌କୁ ଫେରିଆସି ପରଦିନ ଫେଲୁଜାକୁ ଯାଇ-ଥିଲି । ଫେଲୁଜା ଗୋଟିଏ ଛୋଟ ସହର । ଫେଲୁଜାର ରାସ୍ତାଟି ମଧ୍ୟ ବଡ଼ ସୁନ୍ଦର । ରାସ୍ତାର ଦୁଇପାଖରେ କଙ୍କରିଲ ଭୂମି । ମରୁଭୂମିର ବାଲିକଣା ବାଟ ବନ୍ଦ କରି ନାହିଁ । ଫେଲୁଜାରେ ପକ୍କା ରାସ୍ତା ବନ୍ଦ ହୋଇଛି । ତା'ପରେ ଆରମ୍ଭ ହୋଇଛି ମରୁଭୂମି । ମରୁଭୂମିରେ ସାଇକେଲ ଚଳାଇବା ଅସମ୍ଭବ, ସୁତରାଂ ସେଠାରୁ ଫେରି ଆସିଥିଲି । ଫେଲୁଜା ସହିତ ପରବର୍ତ୍ତୀ ଘଟଣାର ସମ୍ବନ୍ଧ ରହିଛି ବୋଲି ଏଠାରେ ଫେଲୁଜାର କଥା ବନ୍ଦକଲି ।

ଫେଲୁଜାରୁ ଫେରିଆସି ଇଲ୍‌ଗୃନ ଘରେ ରହିବା ଉପ-ଯୁକ୍ତ ହେବ ନାହିଁ ଭାବି ମେନ୍‌ରୋଡ଼ ଉପରେ ଅବସ୍ଥିତ ଗୋଟିଏ ଲଜ୍‌ଙ୍ଗ ଘରରେ ଦୈନିକ ଶହେ ଫିଲ୍‌ସ୍ ଦେଇ




ଗୋଟିଏ କୋଠରୀ ଭଡ଼ା ନେଲି । କୋଠରୀ ଖଣ୍ଡିକ ଇଉରୋପୀୟ ଢଙ୍ଗରେ ସଜ୍ଜିତ । ଯେଉଁମାନେ ଲିଙ୍କ ଘରରେ ରହନ୍ତି, ସେମାନେ ସମସ୍ତେ ଇଉରୋପୀୟ । ଇଉରୋପୀୟ ଅନେକ ସଙ୍ଗୀ ପାଇ ଆରବଦେଶ ସମ୍ବନ୍ଧରେ ଅନେକ କଥା ଜାଣିବାକୁ ସୁବିଧା ପାଇଥିଲି ।

ଯେଉଁ କେତେଦିନ ଲିଙ୍କ ଘରେ ରହିଥିଲି ସେଥି-ମଧ୍ୟରେ କେତୋଟି ବିଷୟ ପ୍ରତି ଲକ୍ଷ କରିଥିଲି । ତା'ର ଗୋଟିଏ ମାତ୍ର ଉଦାହରଣ ଦେଇ କଥାଟି ଶେଷ କରିବି । ବିଦେଶକୁ ଭାରତୀୟ ସିପାହୀ ଯାଆନ୍ତି ଯୁଦ୍ଧ କରିବା ପାଇଁ । ଯୁଦ୍ଧ କରିବାଟା ବୀରର କାମ ନିଶ୍ଚୟ ! କିନ୍ତୁ ଜଣେ ବିଦେଶୀ ସେଥି ପାଇଁ ମୋତେ ଦୀ'ଘ୍ରୃରପଦ କଥା ଶୁଣାଇଥିଲା । ପ୍ରତି-ବାଦରେ ମୁଁ ମଧ୍ୟ ତା'ର ଉତ୍ତର ଦେଇଥିଲି । ଫଳରେ ଯେତେ-ବେଳେ ରାସ୍ତା ଉପରକୁ ପାଦ ବଢ଼ାଇଛି ସଙ୍ଗେ ସଙ୍ଗେ କେତେ ଜଣ ଦରଜୀ ମୋ'ର ପଛଧରିଥିଲେ । ସେମାନେ ଦୂରରେ ରହି କେବଳ ମୋ'ର ପୋଷାକର ମାପ ନେଉଥିଲେ । ଏହିପରି ଭାବରେ ପ୍ରତିଦିନ ଦୂରରେ ରହି ପୋଷାକର ମାପ ନେବାଟାକୁ ମୁଁ ଆଦୌ ପସନ୍ଦ କରୁ ନଥିଲି ବୋଲି ଦିନେ ଜଣେ ସେହି ଶ୍ରେଣୀର ଏକ ଦରଜୀ ଗାଲରେ ଗୋଟିଏ ଚାପୁଡ଼ା ବସାଇଥିଲି । ସେହି ଲୋକଟି ସୁଦୂର ପଶ୍ଚିମ ଦେଶକୁ ଆସି ମଧ୍ୟ ମୋତେ ବଙ୍ଗାଳି ବୋଲି ସମ୍ବୋଧନ କରିଥିଲା । ଯେଉଁମାନେ ଦୂରରୁ ପୋଷାକର ମାପ ନିଅନ୍ତି, ତାଙ୍କ ମୁହଁରୁ ଯେ କୌଣସି କଥା ପ୍ରକାଶ ପାଇବାଟା ଦୋଷାବହ ନୁହେଁ ।

ଉପଦେଶ ଦେବାର ଲୋକଙ୍କର ଅଭାବ ନାହିଁ । ଦିନେ କେତେଜଣ ଭାରତୀୟ ଭଦ୍ରଲୋକ ମୋତେ କହିଲେ ଆପଣ-ଙ୍କର ବାବିଲୋନ୍ ଦେଖିଯିବା ଦରକାର । ଅନ୍ୟର ଉପଦେଶ ମୁଁ ଶୁଣେ, କିନ୍ତୁ ସବୁବେଳେ ଉପଦେଶ ଅନୁଯାୟୀ କାମ କରି

ହୁଏ ନାହି । ମୁଁ ଯେତେବେଳେ ଅନ୍ୟମନସ୍କ ଭାବରେ କ'ଣ ଭାବୁଥିଲି, ସେତେବେଳେ ଜଣେ କିରାଣୀ କହିଲେ, ସେ ମୋ ପାଇଁ ରେଲ୍‌ବେରେ ଫ୍ରି ପାଶ୍‌ର ବ୍ୟବସ୍ଥା କରିଦେବେ । ତାଙ୍କର କଥା ଶୁଣି ଖୁସି ହେଲି । କିରାଣୀଟି ସଙ୍ଗେ ସଙ୍ଗେ ମୋ ନାମରେ ଗୋଟିଏ ଦରଖାସ୍ତ ଲେଖି ନିଜ ପାଖରୁ ଗୋଟିଏ ଷ୍ଟାମ୍ପ ଲଗାଇ ଚିଠି ଖଣ୍ଡିକ ମୋ ହାତରେ ଦେଇ କହିଲେ, ଚିଠି ଖଣ୍ଡି ଲେଖିବାର ଶ୍ରମ ଯଦି ସାର୍ଥକ ହୁଏ, ତାହା ହେଲେ ଭ୍ରମଣର ପୂଣ୍ୟର ଫଳ ସେ ମଧ୍ୟ କେତେକ ପରିମାଣରେ ପାଇବେ ।

ତାଙ୍କର କଥାର ଉତ୍ତର ଦେଲି ନାହିଁ । ନୀରବରେ ଭାବିଲି "ଯେଉଁ ଜାତିର ଶିକ୍ଷିତ ଲୋକ ପାପ ପୁଣ୍ୟର ଏତେ ହିସାବ ରଖନ୍ତି, ଦେଲା ବେଳେ ମଧ୍ୟ ପାଇବାର ଲୋଭ ରଖି ଥାଆନ୍ତି. ସେହି ଜାତି ଯେ କେଉଁ ନିମ୍ନ ସ୍ତରକୁ ଓହ୍ଲାଇ ଯାଇଛି ଭାବି ସ୍ଥିର କରିବା ଏକ କଠିନ ସମସ୍ୟା ! କିରାଣୀ-ମାନଙ୍କୁ ଏଜେଣ୍ଟ ଦୟାକରି ପାରେ । ମୁଁ ତ ଆଉ ତାଙ୍କ ଭଳି ନୁହେ । ମୁଁ ଚାହେଁ ମୋ'ର ଦେଶ ମଧ୍ୟ ସ୍ୱାଧୀନ ହୋଇ ବ୍ରିଟିଶ୍ ପରି ଶକ୍ତିଶାଳୀ ଜାତିରେ ପରିଣତ ହେଉ । ସୁତରାଂ ମୋ ଭଳି ଲୋକକୁ ବ୍ରିଟିଶ୍ ଏଜେଣ୍ଟ ଦୟା ଦେଖାଇବା ଅସମ୍ଭବ ବ୍ୟାପାର, ଏଥିରେ ଯେ ତା'ର ସ୍ୱାର୍ଥରେ ଆଘାତ ଲାଗିବ । ଯାହା ଭାବିଥିଲି ଠିକ୍ ସେଇୟା ହେଲା । ଦରଖାସ୍ତ ନାମଞ୍ଜୁର ହେଲା । କିନ୍ତୁ କିରାଣୀ ଦଳର ଏଥିରେ ଆଖି ଖୋଲିଲା ନାହିଁ । ସେମାନେ ଭାବିଲେ ଦରଖାସ୍ତରେ କେଉଁଠି ଭୁଲ ରହିଯାଇ ଥିଲା ନିଶ୍ଚୟ ! ତାଙ୍କ କଥା ଶୁଣି ହସିବି କି କାନ୍ଦିବି ଠିକ୍ କରି ପାରିଲି ନାହିଁ ।

ଯେଉଁ କାମରେ ବାଧା ପଡ଼େ ସେହି କାମ କରିବାକୁ ଯଦି ମୁଁ ସକ୍ଷମ ହୁଏ ଶୀଘ୍ର ଶୀଘ୍ର କରି ପକାଏ । ବାଗ୍‌ଦାଦରୁ ବସୋରାର ଭଡ଼ା ମଧ୍ୟ ଏତେ ବେଶୀ ନ ଥିଲା ଯେ ମୋତେ କଷ୍ଟ ଲାଗନ୍ତା । ଏଜେଣ୍ଟ ଠାରୁ ଉତ୍ତର ପାଇବା ସଙ୍ଗେ ସଙ୍ଗେ




ଷ୍ଟେସନକୁ ଯାଇ ଖଣ୍ଡିଏ ରିଟର୍ଣ୍ଣ ଟିକେଟ କିଣି ଲଜିଂ ଘରକୁ ଯେତେବେଳେ ଫେରୁଥିଲି ସେତେବେଳେ ଲକ୍ଷ୍ନୌର ଲୋକଙ୍କ ସଙ୍ଗରେ ଦେଖା ହେଲା । ସେ ମୋ'ର ପୂର୍ବ ପରିଚିତ । ତାଙ୍କ ସଙ୍ଗରେ ମୋ'ର ଦେଖା ହୋଇଥିଲା ତେହେରାଣରେ । ତେହେ-ରାଣରେ ଥିବା ସମୟରେ ତାଙ୍କର ବିଦେଶର ମୁସଲମାନ ପ୍ରୀତି ମଉଳା ପଡ଼ିଥିଲା, କାରଣ ସେ 'ବି ଥିଲେ ମୋ ପରି ଭିଖାରି । ଭିକ୍ଷା କରି ସେ ମଧ୍ୟ ତୀର୍ଥ ଭ୍ରମଣରେ ବାହାରି ଥିଲେ । ଇରାଣୀ-ଗଣ ତାଙ୍କୁ ଗୋଟିଏ ପଇସା ଦେଇ ମଧ୍ୟ ସାହାଯ୍ୟ କରି ନାହାନ୍ତି । ବରଂ ତାଙ୍କୁ ଭିଖାରି ଆଇନରେ ପକାଇବାକୁ ଚେଷ୍ଟା କରିଥିଲେ । ସେଠାରୁ ହିନ୍ଦୁଗଣ କେବଳ ତାଙ୍କୁ ସାହାଯ୍ୟ କରି ବାଗଦାଦ ପଠାଇଛନ୍ତି । ଏଠାରେ ପହଞ୍ଚି ମଧ୍ୟ ସେ ହିନ୍ଦୁ-ମାନଙ୍କର ସାହାଯ୍ୟରେ କାରବାଲା ଯିବାର ପାଥେୟ ଯୋଗାଡ଼ କରିଛନ୍ତି । ମୋ ସହିତ ଦେଖା ହେଲା ପରେ ତାଙ୍କ ପ୍ରାଣରେ ଯେପରି ଏକ ନବଜୀବନର ଉନ୍ମେଷ ହେଲା । ସେ ମୋ ସହିତ କାରବାଲା ଯିବେ ବୋଲି ଠିକ୍ କଲେ । ପରଦିନ ରେଲ୍ ଷ୍ଟେସନରେ ଆମେ ଚାରିଜଣ ସଙ୍ଗୀ ହୋଇ ଗୋଟିଏ ଡବାରେ ଉଠିଲୁ । ତାଙ୍କ ସଙ୍ଗରେ ତାଙ୍କର ସ୍ତ୍ରୀ ଆଉ ପୁଅ ମଧ୍ୟ ଥିଲେ ।

ବାଗ୍‌ଦାଦ ଷ୍ଟେସନରେ ବେଶୀ ଲୋକ ଗହଳି ନ ଥିଲା । ଏ ଅଞ୍ଚଳର ଲୋକେ ପ୍ରାୟ ଗାଡ଼ିରେ ବେଶୀ ଯିବା ଆସିବା କରନ୍ତି ନାହିଁ। ଉଟ, ଘୋଡ଼ା ଏଇଥିରେ ବେଶୀ ଚଢ଼ନ୍ତି । ମୋ'ର ସଙ୍ଗୀ ତିନିଜଣ ଗାଡ଼ିରେ ବସି ନାନା ପ୍ରକାର ମନ୍ତ୍ର ପଢ଼ିବାକୁ ଲାଗିଗଲେ । ଏଥିରେ ମୁଁ ଆଦୌ ବିରକ୍ତ ହୋଇନାହିଁ । ଗୟା, କାଶୀ, ଯିବା ବେଳେ ହିନ୍ଦୁଗଣ ମଧ୍ୟ କେତେ ମନ୍ତ୍ର ପଢ଼ନ୍ତି ତା'ର ହିସାବ କିଏ ରଖେ । ହିନ୍ଦୁଙ୍କର ମନ୍ତ୍ର ପଢ଼ାଟାକୁ ଯଦି ହଜମ କରି ପାରିବି ତେବେ ମୁସଲମାନର ମନ୍ତ୍ର ପଢ଼ାଟାକୁ ସହ୍ୟ କରିପାରିବି ନାହିଁ କାହିଁକି ?

ଗାଡ଼ି ଛାଡ଼ିବା ପୂର୍ବରୁ ମୁଁ ରେଲଓ୍ୱେ ବହି ଦୋକାନରୁ ଦୁଇଖଣ୍ଡି ଇଂରାଜୀ ସାପ୍ତାହିକ ଖବର କାଗଜ କିଣି ପଢ଼ିବାକୁ ଲାଗିଲି । ମୋ'ର ସଙ୍ଗୀଗଣ ତୀର୍ଥଯାତ୍ରୀ ବୋଲି ଜଣେ ଆରବ ବୁଝିପାରି ଆମ ଡବାରେ ଆସି ବସିଲା । କିନ୍ତୁ ମୋତେ ଦେଖି ସେପରି ଟିକାଏ ବିରକ୍ତ ହୋଇ ଉଠିଲା । ଲୋକଟି ବଙ୍କା ହିନ୍ଦି ଭାଷାରେ କାରବାଲାର ମହାତ୍ମ୍ୟ ମୋ'ର ସଙ୍ଗୀମାନଙ୍କୁ ବୁଝାଇବାକୁ ଲାଗିଲା । ମୁଁ ଆଦୌ ଅସୁବିଧା ମନେ କରି ନାହିଁ, କାରଣ ଗୟା, କାଶୀର ମହାତ୍ମ୍ୟ ଯଦି ହଜମ କରି ପାରିବି କାରବାଲାର ମହାତ୍ମ୍ୟ ସହ୍ୟ କରିବି ନାହିଁ କାହିଁକି ? ମୁଁ ମଧ ବସି ବସି କାରବାଲାର ମହାତ୍ମ୍ୟ ମନଯୋଗ ଦେଇ ଶୁଣିଲି । ଏହା ଦେଖି ଆରବ ଲୋକଟିର ମୋ ପ୍ରତି ବୀତଶ୍ରଦ୍ଧ ଭାବ ଧୀରେ ଧୀରେ ଦୂର ହୋଇଗଲା । ମୁଁ ମଧ୍ୟ କାରବାଲା ଯିବି କି ନାହିଁ ବୋଲି ପଚାରିଲେ । ମୁଁ ଅନ୍ୟ ଧର୍ମର ଲୋକ ଶୁଣି ମଧ୍ୟ ତାଙ୍କର ମନରେ କୌଣସି ବିକାର ଆସିଲା ନାହିଁ । କଥା ପ୍ରସଙ୍ଗରେ ଧର୍ମଯାଜକ ମୋତେ ଜଣାଇ ଦେଲେ ତାଙ୍କ ଦେଶର ଖ୍ରୀଷ୍ଟାନଗଣ ମଧ୍ୟ ତାଙ୍କ ପାଖକୁ ଅନେକ ସମୟରେ ଭିକ୍ଷା କରିବା ପାଇଁ ଆସନ୍ତି । ସେମାନେ ଖ୍ରୀଷ୍ଟାନମାନଙ୍କୁ ଘୃଣା କରନ୍ତି ନାହିଁ ବରଂ ଜେରୁଜେଲମ୍ ଯିବା ପାଇଁ ଉତ୍ସାହିତ କରନ୍ତି । ଧର୍ମଯାଜକଙ୍କୁ ପାଇ ମୁଁ ଅନେକ ପରିମାଣରେ ନିଶ୍ଚିନ୍ତ ହେଲି ଆଉ ସଙ୍ଗୀମାନଙ୍କୁ ତାଙ୍କ ସହିତ ଯିବାକୁ ଅନୁରୋଧ କଲି । ସଙ୍ଗୀମାନେ ମୋ କଥାରେ ରାଜି ହୋଇଥିଲେ ।

ଆରବ ଦେଶ ମରୁମୟ । ମରୁଭୂମିରେ ଓଟ ଚାଲେ । ଆରବରେ ଘୋଡ଼ା ମଧ ଅଛନ୍ତି ଆଉ ଘୋଡ଼ାର ସୁନାମ ମଧ୍ୟ ଅଛି । କେବଳ ଏହା କହିଲେ ତ ହେବ ନାହିଁ । ଏଣେ ଯେ ଆରବ ଦେଶର ରେଲଗାଡ଼ି "ହର୍ସ ପାଓ୍ୱାର" ରେ ନ ଚାଲି

ଗୃଲେ 'କାମେଲ୍ ପାଓ୍ୱାର'ରେ । ଗାଡ଼ି କାମେଲ୍ ଅର୍ଥାତ୍ ଉଷ୍ଟ୍ର ପାଓ୍ୱାରରେ ଉଟର ଗତି ଘେନି ଘଣ୍ଟାରେ ବାରମାଇଲ୍ ବେଗରେ ଚାଲୁଥିଲା । ଉଟରେ ବସିବା ମୋ'ର ଅଭ୍ୟାସ ଥିଲା ବୋଲି ପ୍ରଥମ କିଛି କଷ୍ଟ ହୋଇନାହିଁ । କେତେ ଘଣ୍ଟା ବସି ରହିଲା ପରେ ଅଣ୍ଟାରେ ବଥା ଜଣାଗଲା । ପ୍ରୋଗ୍ରାମ ପରିବର୍ତ୍ତନ କରିବାକୁ ବାଧ୍ୟ ହେଲି ! ସ୍ଥିର କଲି ହାଲ୍ଲାରେ ପହଞ୍ଚି ଗାଡ଼ିରୁ ଓହ୍ଲାଇ ଯିବି ଆଉ ବାବିଲୋନ ଦେଖି ବଗ୍‌ଦାଦ୍ ଆଡ଼କୁ ଚାଲିବି ।

ଯେତେବେଳେ ସୁଦ୍ଧା ମୋ'ର ଅଣ୍ଟାରେ ବେଶ୍ ଦରଜ ଜଣା ଯାଉଥିଲା । ଗାଡ଼ି ଯାଇ ଗୋଟିଏ ଷ୍ଟେସନରେ ଛିଡ଼ା ହେଲା । ଗାଡ଼ିରୁ ଓହ୍ଲାଇ ଟିକିଏ ବୁଲାଚାଲା କରି ପୁଣି ଯେମିତି ଗାଡ଼ିକୁ ଉଠିବାକୁ ଗଲି ସେମିତି ଆମ ଗାଡ଼ିରେ ଜଣେ ଭାରତୀୟ ପାନ୍‌ଇସ୍‌ଲାମୀ ପ୍ରଚାରକ ଉଠିଲେ । ତାଙ୍କଘର ମୁରାଦାବାଦରେ, ସେ ସୁନ୍ନି ସମ୍ପ୍ରଦାୟର ଲୋକ । ମୋ ସଙ୍ଗରେ ଯେଉଁମାନେ କାରବାଲା ଯାଉଥିଲେ ସେମାନେ ଥିଲେ ସିଆ ସମ୍ପ୍ରଦାୟର, ତାଙ୍କର ଘର ଲକ୍ଷ୍ନୌରେ । ବିଶେଷତଃ ଭାରତୀୟ ମୁସଲମାନଙ୍କ ଭିତରେ ସିଆ ସୁନ୍ନିଙ୍କ ମଧ୍ୟରେ ଏତେ ଅମେଳ ଏକଥା ମୋତେ ଆଗରୁ ଜଣା ନଥିଲା । ବିଦେଶକୁ ଆସି ମଧ୍ୟ ମୁରାଦାବାଦର ଲୋକ ଲକ୍ଷ୍ନୌର ଲୋକଙ୍କ ସହିତ ବେଶୀ ସମୟ କଥାବାର୍ତ୍ତା କଲେ ନାହିଁ । ଲକ୍ଷ୍ନୌର ଲୋକଟି ବଡ଼ ରସିକ । ସେ ହଠାତ୍ କହିପକାଇଲେ, "ମୋର ସଙ୍ଗୀ ଭଦ୍ରଲୋକ ଆଗରେ ହିନ୍ଦୁ ଥିଲେ । ଏଠାକୁ ଆସି ଖ୍ରୀଷ୍ଟାନ୍ ଧର୍ମ ଗ୍ରହଣ କରିଛନ୍ତି ।" କଥାଟା ଶୁଣିବା ମାତ୍ରକେ ଅନ୍ୟ ଜଣଙ୍କ ଆଗ୍ରହ ସହିତ ମୋ'ର ଧର୍ମାନ୍ତର ସାର୍ଟିଫିକେଟ ଦେଖିବାକୁ ମାଗିଲା । ମୁଁ ନୀରବରେ ବସି ରହିବାରୁ ସେ କହିଲା "ଆପଣ ବୋମ୍ବେ ଫେରିଯାଇ ସ୍ୱଚ୍ଛନ୍ଦରେ ଅନ୍ୟ ଧର୍ମ ଗ୍ରହଣ କରିପାରନ୍ତି ।






ଇରାକର ରାଜା ଗୋଟାଏ ଅପଦାର୍ଥ ଲୋକ । ରାଜା ଆଇନ କରିଛନ୍ତି ଯେ ବର୍ଷକ ଭିତରେ କେହି ଧର୍ମାନ୍ତର ଗ୍ରହଣ କରି ପାରିବେ ନାହିଁ । ଏହି ଆଇନ ପୁଣି ହୋଇଛି ବ୍ରିଟିଶ୍ ରାଜାର ପରାମର୍ଶରେ । ସୁଖର ବିଷୟ ଆପଣ ବୋମ୍ବେ ଯାଉଛନ୍ତି ସେଠାରେ ଧର୍ମାନ୍ତର ଗ୍ରହଣ କରିବାକୁ ଆପଣଙ୍କୁ ଆଦୌ କଷ୍ଟ ହେବ ନାହିଁ ।” ଅବ୍ଦୁର ପୁଣି କହିଲେ, “ବ୍ରିଟିଶ୍ ରାଜା ଫୈଜ-ଲଙ୍କୁ ସିଂହାସନରେ ବସାଇଛନ୍ତି ସୁତରାଂ ଖ୍ରୀଷ୍ଟାନ୍‌ମାନଙ୍କୁ ରାଜା ଫୈଜଲ୍ ଅନେକ ସୁବିଧା ସୁଯୋଗ ଦେଇଥାନ୍ତି ।”

ମୁଁ ନୀରବରେ ସବୁ କଥା ଶୁଣିଗଲି । ସିହା ସଙ୍ଗୀଙ୍କ ମଧ୍ୟ ଅଉ କଥା ନ ବଢ଼ାଇ ତାଙ୍କର ଧର୍ମଯାଜକଙ୍କ ପାଖରୁ କାର-ବାଲାର ମହାତ୍ମ୍ୟ ବସି ବସି ଶୁଣିଲେ । ଏହାଭିତରେ ଗୋଟିଏ ଷ୍ଟେସନରେ ଗାଡ଼ି ଛିଡ଼ା ହେଲା । ପାନ୍ ଇସଲାମ୍‌ର ପ୍ରଚାରକ ଗାଡ଼ିରୁ ଓହ୍ଲାଇ ଷ୍ଟେସନ ଆଡ଼କୁ ଯିବା ପୂର୍ବରୁ ମୋତେ ଡାକି ପଚାରିଲେ “ଆପଣ କଣ କାରବାଲା ଯାଉଛନ୍ତି ।” ମୁଁ କହିଲି, “ନା, ବାବିଲୋନ ଯାଉଛି ।” ସେ ଏହା ଶୁଣି ଆନନ୍ଦିତ ହୋଇ କହିଲେ, “ହିଲ୍ଲାରେ ଜଣେ ବଙ୍ଗାଳି ମୁସଲମାନ ଅଛନ୍ତି । ତାଙ୍କ ଘରେ ଯାଇ ରହିବେ । ମୁଁ ବର୍ତ୍ତମାନ ତାଙ୍କୁ ତାର କରି ଜଣାଇଦେବି । ଆପଣଙ୍କ ନାଁଟା କହିବେ କି ?” ମୋ’ର ନାମ ଶୁଣି ଭଦ୍ରଲୋକଙ୍କର ଭୁଲ୍ ଭାଙ୍ଗିଲା । ସେ ମୋତେ ପ୍ରକାଶ୍ୟରେ କହିଲେ, “ଆପଣ ଯେ ଖ୍ରୀଷ୍ଟଧର୍ମ ଗ୍ରହଣ କରିଛନ୍ତି ଏଇଟା ତେବେ ନିହାତି ମିଛ କଥା ?” “ମୁଁ ତ ଧର୍ମ ସମ୍ବନ୍ଧରେ କୌଣସି କଥା କହିନାହିଁ । ଆପଣ ଦୁଇଜଣ ମିଶି କଥାବାର୍ତ୍ତା କରିଛନ୍ତି । ମୁଁ କେବଳ ବସି ବସି ଶୁଣିଛି ।” ଭଦ୍ରଲୋକ ଏହା ଶୁଣି ନୀରବରେ ବିଦାୟ ନେଲେ ।

ଇରାକରେ ପହୁଞ୍ଚିଲା ପରେ ଶୁଣିଥିଲି, ସେଠାରେ ଧର୍ମ ପରିବର୍ତ୍ତନର ଗୋଟିଏ ରୋଗ ଦେଖା ଦେଇଛି । ହସେ

ଲୋକେ ଧର୍ମାନ୍ତର ଗ୍ରହଣ କରୁଛନ୍ତି । ଯେଉଁମାନେ ଟିକିଏ ଶିକ୍ଷିତ, ସେହିମାନେ ବେଶୀ ପରିମାଣରେ ଧର୍ମ ପରିବର୍ତ୍ତନ କରୁଛନ୍ତି । ଯେଉଁମାନେ ରାଜଦ୍ୱାରରେ ଅନୁଗ୍ରହପ୍ରାର୍ଥୀ ସେମାନେ ଏ ପରିବର୍ତ୍ତନ ଦେଖି ବିଚଳିତ ହୋଇ ଉଠିଲେ । ଫଳରେ ଗୋଟିଏ ନୂତନ ଆଇନ ସୃଷ୍ଟି ହେଲା । ଯଦି କେହି ନିଜର ଧର୍ମ ପରିବର୍ତ୍ତନ କରିବାକୁ ଇଚ୍ଛା କରିବ ତାହାହେଲେ ତାକୁ ଇରାକର ସ୍ୱରାଷ୍ଟ୍ର ସଚିବ ପାଖରେ ଦରଖାସ୍ତ କରି ଜଣାଇବାକୁ ହେବ ଯେ, ସେ ତା'ର ପୁରାତନ ଧର୍ମ ବଦଳାଇ ନୂତନ ଧର୍ମ ଗ୍ରହଣ କରିବାକୁ ଚାହେଁ । ସ୍ୱରାଷ୍ଟ୍ର ସଚିବ ଆବେଦନ ପାଇବା ସଙ୍ଗେ ସଙ୍ଗେ ଆବେଦନକାରୀ ପାଖକୁ ତା'ର ପୁରାତନ ଧର୍ମର ଜଣେ ଧର୍ମଯାଜକଙ୍କୁ ପଠାଇ ଦିଅନ୍ତି, ଆଉ ଛଅମାସ କାଳ ଆବେଦନକାରୀକୁ ସେହି ଧର୍ମର ମହିମା ତା'ର ଧର୍ମଯାଜକ ପାଖରୁ ଶୁଣିବାକୁ ହୁଏ । ଏଥିରେ ଯଦି ଆବେଦନକାରୀର ମନର ପରିବର୍ତ୍ତନ ନ ହୁଏ ତାହା ହେଲେ ପୁଣି ଛଅମାସ ସମୟ ଦିଆଯାଏ ଚିନ୍ତାକରି ମନ ଠିକ୍ କରିବା ପାଇଁ । ତା'ପରେ ଯଦି ସେହି ଲୋକ ଧର୍ମ ପରିବର୍ତ୍ତନର ଇଚ୍ଛା ତ୍ୟାଗ ନକରେ ତାହା ହେଲେ ତାକୁ ଧର୍ମାନ୍ତରର ସାର୍ଟିଫିକେଟ ଦିଆଯାଉ ଥିଲା ।

ଧର୍ମ ପରିବର୍ତ୍ତନ ମୂଳରେ ଦୁଇଟି କାରଣ ଥିଲା । ଧର୍ମ ପରିବର୍ତ୍ତନ କରି ସ୍ୱର୍ଗ ଲାଭର କଳ୍ପନା ତ ବହୁ ଦୂରର କଥା । ଅସଲ କାରଣ ଥିଲା, ଯେତେବେଳେ ଦକ୍ଷିଣ ଆଫ୍ରିକାକୁ ଇମିଗ୍ରେଣ୍ଟ ଭାବରେ ଆର୍ମାନୀ ଗଣ ଯାଉଥିଲେ, ବର୍ତ୍ତମାନ ମଧ୍ୟ ଯାଉଛନ୍ତି । ଦକ୍ଷିଣ ଆଫ୍ରିକାକୁ ଯେଉଁ ଆର୍ମାନୀଗଣ ଯାଉଥିଲେ ପ୍ରାୟ ଅଧିକାଂଶ ସ୍ଥଳପଥରେ ଯାଉଥିଲେ । ଆର୍ମାନୀଗଣ ଖ୍ରୀଷ୍ଟ-ଧର୍ମାବଲମ୍ବୀ । ଆରବମାନଙ୍କ ଭିତରେ ଖ୍ରୀଷ୍ଟାନ ଥିଲେ ମଧ୍ୟ ତାଙ୍କର ସଂଖ୍ୟା ବହୁ ନଗଣ୍ୟ ଥିଲା ଆଉ ସେମାନେ ବିଦେଶକୁ ଯିବାକୁ ଆଦୌ ଇଚ୍ଛା କରୁ ନଥିଲେ । ମୁସଲମାନ

ଅରବ ସାହସୀ ଅଭି ବିଦେଶକୁ ଯିବା ପାଇଁ ଉତ୍ସୁକ ଥିଲେ । ମୁସଲମାନ ଅରବଗଣଙ୍କ ପାଇଁ ଦକ୍ଷିଣ ଅଫ୍ରିକାର ଦ୍ୱାର ବନ୍ଦ ଥିଲା । ମୁସଲମାନ ଅରବଗଣ ଏଣେ ଦକ୍ଷିଣ ଅଫ୍ରିକାର ଧନସମ୍ପଦର ଖବର ଭଲଭାବରେ ଜାଣିଥିଲେ । ଅହୁରି ମଧ୍ୟ, ଦକ୍ଷିଣ ଅଫ୍ରିକା ଯେ ପ୍ରତ୍ୟେକ ଇଉରୋପୀୟ ଦେଶଠାରୁ ମଜୁରି ବେଶୀ ଦିଏ ଏକଥା ମଧ୍ୟ ସେମାନେ ଭଲ ଭାବରେ ଜାଣିଥିଲେ । କିନ୍ତୁ ଏହିସବୁ ଦେଶର ଦ୍ୱାର ତାଙ୍କ ପାଇଁ ବନ୍ଦ ଅଭି ଅର୍ମାନୀମାନଙ୍କ ପାଇଁ ଖୋଲା । ସେମାନେ ପୁଣି ସେ ଦେଶକୁ ଯାଇ ସୁଖ ସ୍ୱଚ୍ଛନ୍ଦରେ ଜୀବନ ଯାପନ କରନ୍ତି । ଏହି ସୁଖ ସୁବିଧା ପାଇବାକୁ ହେଲେ ଧର୍ମାନ୍ତର ଛଡ଼ା ଅନ୍ୟ କୌଣସି ରାସ୍ତା ନାହିଁ । ସେଥିପାଇଁ ଶିକ୍ଷିତ ଅରବଙ୍କ ମଧ୍ୟରେ ଅନେକେ ଧର୍ମାନ୍ତର ଗ୍ରହଣ କରି ଅର୍ମାନୀମାନଙ୍କ ସଙ୍ଗରେ ଦକ୍ଷିଣ ଅଫ୍ରିକାକୁ ଯିବାକୁ ସକ୍ଷମ ହୋଇଛନ୍ତି । ସେହି ଶ୍ରେଣୀର କେତେକ ଅରବଙ୍କ ସଙ୍ଗରେ ମୋ'ର ଜୋହାନ୍ସବର୍ଗରେ ଦେଖା ହୋଇଥିଲା ।

ଦ୍ୱିତୀୟ କାରଣ ହେଉଛି, ଏହି ପୃଥିବୀରେ ଏପରି କେତେ ଅଦ୍ଭୁତ ଘଟଣା ଘଟିଯାଉଛି, ଯାହାର ଖବର ସାଧାରଣ ଲୋକେ ଆଦୌ ଜାଣନ୍ତି ନାହିଁ । ପୂର୍ବକାଳରେ ସ୍ପେନୀୟଗଣ ଯେତେବେଳେ ଦକ୍ଷିଣ ଆମେରିକା ଦଖଲ କଲେ ସେତେବେଳେ ସେମାନେ ବହୁତ ରୋମାନ କ୍ୟାଥଲିକ୍‌ଗଣଙ୍କୁ ଇମିଗ୍ରେଣ୍ଟ କରି ପଠାଉଥିଲେ । ତା'ର ପ୍ରଭାବ ବର୍ତ୍ତମାନ ସୁଦ୍ଧା ଯାଇ ନାହିଁ । ଲିବାନନ୍‌ରେ ଅନେକ ଖ୍ରୀଷ୍ଟାନ ଅଛନ୍ତି । ଲିବାନନୀ ଖ୍ରୀଷ୍ଟାନ୍‌ଗଣ ସିମେଣ୍ଟିକ୍ । ସିମେଣ୍ଟିକ୍ ଏବଂ ଲୋହିତ ଭାରତୀୟଗଣଙ୍କ ସମିଶ୍ରଣରେ ଯେଉଁ ସନ୍ତାନ ଉତ୍ପନ୍ନ ହୁଏ, ତା'ର ଅବୟବ ସୁନ୍ଦର ହୁଏ, ବୁଦ୍ଧି ପ୍ରଖର ଏବଂ ସେ କର୍ମଠ ହୁଏ । ସେଥିପାଇଁ ଦକ୍ଷିଣ ଆମେରିକାକୁ ସିମେଣ୍ଟିକ ଶ୍ରେଣୀର

ଖ୍ରୀଷ୍ଟାନଗଣଙ୍କୁ ଅବାଧରେ ପ୍ରବେଶ କରିବାକୁ ଦିଆ ଯାଇ ଥିଲା । ଇସ୍ରକର ଖ୍ରୀଷ୍ଟାନ୍ ଅରବ ସ୍ୱଦେଶକୁ ଯିବାପାଇଁ ଆଦୌ ପ୍ରସ୍ତୁତ ନୁହନ୍ତି । ମୁସଲମାନ ଅରବଗଣଙ୍କୁ ମଧ୍ୟ ସେଠାକୁ ଯିବାପାଇଁ ଇମିଗ୍ରେଣ୍ଟ କରି ହୁଏ ନାହିଁ । ସୁତରାଂ ସେ ଦେଶକୁ ଅବାଧ ପ୍ରବେଶ ପାଇଁ କେତେକ ମୁସଲମାନ ଅରବ ଖ୍ରୀଷ୍ଟାନ ଧର୍ମରେ, ଦୀକ୍ଷିତ ହେଉଥିଲେ । ମୁସଲମାନ ଅରବ ଯେପରି ଭାବରେ ସ୍ୱଧର୍ମ ବଜାୟ ରଖି ଦକ୍ଷିଣ ଅଫ୍ରି-କାକୁ ଯାଇ ପାରେ ତା'ର ବ୍ୟବସ୍ଥା କେହି କରନ୍ତି ନାହିଁ । କେବଳ କେହି ଯେପରି ଶୀଘ୍ର ଶୀଘ୍ର ଧର୍ମାନ୍ତର ଗ୍ରହଣ କରି ନ ପାରନ୍ତି ସେଥିପାଇଁ ଏକ ବାଧା ସୃଷ୍ଟି କରି ହୋଇଥିଲା । ମୋ'ର ମନେ ହୁଏ ଏହା ଭିତରେ ମଧ୍ୟ କୌଣସି ଗୁପ୍ତ ଅଭିସନ୍ଧି ନିହିତ ଥିଲା । ଯଦି ଏକାବେଳେକେ ଅନେକ ଲୋକ ଦକ୍ଷିଣ ଅଫ୍ରିକାକୁ ଯିବାକୁ ବସିବେ ତାହାହେଲେ ବ୍ୟାପରଟା ଟିକିଏ ଗୋଳମାଳିଆ ହୋଇ ପଡ଼ିବ । ଏଥିପାଇଁ ପ୍ରତିବର୍ଷ ଯେପରି କିଛି ସଂଖ୍ୟାରେ ଯାଇ ପାରିବେ । ସେଥିପାଇଁ ଶୀଘ୍ର ଧର୍ମାନ୍ତର ଗ୍ରହଣରେ ବାଧା ସୃଷ୍ଟି କରି ହୋଇଥିଲା ବୋଲି ମନେହୁଏ ।

ନାନା ଚିନ୍ତାରେ ମନଟା ବିବ୍ରତ ହୋଇ ପଡ଼ିଥିଲା । ସେଥିପାଇଁ ବାହାରକୁ ଚୃହିଁ ମଧ୍ୟ ବାହାରର କିଛି ଦେଖିପାରୁ ନଥିଲି । ହଠାତ୍ ଦେଖିଲି, ସଂଧ୍ୟାର ଛାୟା ମରୁଭୂମି ଉପରେ ଆସି ପଡ଼ୁଛି । ଦୁଇ ପାଖର ବାଲିକଣା ସଂଧ୍ୟା ଆକାଶର ତାରାର ଆଲୁଅ ପାଇ ଚକମକ କରୁଛି । ରାତିର ଅନ୍ଧକାର ସ୍ପଷ୍ଟ ଜଣା ଯାଉଥିଲେ ମଧ୍ୟ ମରୁଭୂମି ଅନ୍ଧକାରର ବୈଶିଷ୍ଟ୍ୟ ଅନୁଭବ କରି ହୁଏ ନାହିଁ । ଅନ୍ଧକାରରେ ଯଦି ଆଲୋକର ସତ୍ତା ଅନୁଭବ କରିଯାଏ ତାହାହେଲେ ତାହା ଏକମାତ୍ର ମରୁ-ଭୂମିରେ ସମ୍ଭବ । ଅନ୍ଧକାରରେ ଆଲୋକର ସତ୍ତା ଅନେକ ସମୟ ଅନୁଭବ କଲି । ତା'ପରେ ଆଖି ଦୁଇଟି ଧୀରେ ଧୀରେ ବୁଜି ଆସିଲା ।



ରାତି ଯେତେବେଳେ ଦୁଇଟା ବାଜି ଯାଇଥାଏ । ଗାଡ଼ି ହାଲ୍ଲାଷ୍ଟେସନରେ ଆସି ଛିଡ଼ା ହେଲା । ଗାଡ଼ିରୁ ଓହ୍ଲାଇବା ସଙ୍ଗେ ସଙ୍ଗେ ଜଣେ ଭଦ୍ରଲୋକ ମୋ ପାଖକୁ ଆସି କହିଲେ-- ମୁଁ ଏ ଷ୍ଟେସନର ଷ୍ଟେସନମାଷ୍ଟର, ମୋ ସାଙ୍ଗରେ ଚାଲନ୍ତୁ । ଷ୍ଟେସନମାଷ୍ଟର ବଙ୍ଗାଳୀ । ଅଳ୍ପ ଦୂରରେ କେତେଜଣ ଆରବ ଭଦ୍ରଲୋକ କାଓ୍ୱା ପିଉଥିଲେ । ଷ୍ଟେସନମାଷ୍ଟର ମୋତେ ତାଙ୍କ ସହିତ ପରିଚୟ କରାଇ ଦେଲେ । ଆରବ ଭଦ୍ରଲୋକଗଣ ପ୍ରଥମେ ମୋତେ ବାବିଲୋନ ସମ୍ବନ୍ଧରେ ଅନେକ ପ୍ରକାର ପୌରାଣିକ କଥା ଶୁଣାଇଲେ । ମୁଁ ଉତ୍ତରରେ ତାଙ୍କୁ କହିଥିଲି, “ପୌରାଣିକ କଥା ପ୍ରାୟ ମନଗଢ଼ା, ସୁତରାଂ ବାବିଲୋନ ସମ୍ବ-ନ୍ଧରେ ପୌରାଣିକ କଥା ଉପରେ ମୁଁ କୌଣସି ଗୁରୁତ୍ୱ ଦେବ ନାହିଁ ।” ମୋ କଥା ଶେଷ ହେବା ସଙ୍ଗେ ସଙ୍ଗେ ଜଣେ ଭଦ୍ରଲୋକ ଛିଡ଼ା ହୋଇ କହିଲେ—“ତାହା ହେଲେ ଆପଣ ରାମାୟଣ ବହିକୁ ମଧ୍ୟ ମନଗଢ଼ା କଥା ବୋଲି କହି ପାରନ୍ତି !” ତାଙ୍କର ଏହି ପ୍ରଶ୍ନର ପଛରେ ଆକ୍ରୋଶ ଭରି ଥିଲା । ଅନ୍ୟ କୌଣସି ଜାତିର କୌଣସି ବସ୍ତୁକୁ ଖରାପ କହି ନିଜର ବିଷ-ୟକୁ ଯେଉଁମାନେ ଭଲ ବୋଲି କହନ୍ତି ସେହିମାନଙ୍କୁ ଏ ଭଳି ପ୍ରଶ୍ନର ଜବାବ୍ ଦେବାକୁ ପଡ଼େ; କିନ୍ତୁ ମୋତେ ଏ ଭଳି ପ୍ରଶ୍ନ କରିବା ତାଙ୍କର ଭୁଲ୍ ହୋଇଥିଲା । ପ୍ରଶ୍ନର ଉତ୍ତରରେ ମୁଁ ଶାନ୍ତ ଭାବରେ କହିଥିଲି—ଆସ୍ଥା ମୋର କୌଣସିଥିରେ ନାହିଁ । ରାମାୟଣ ଆଦିଯୁଗର ଗୋଟିଏ ପୌରାଣିକ ବହି । ପୁରାଣ ମାନେ ହେଉଛି ଗଳ୍ପ । ଗଳ୍ପ ସତ୍ୟ ମଧ୍ୟ ହୋଇପାରେ ମିଥ୍ୟା ମଧ୍ୟ ହୋଇପାରେ । ରାମାୟଣ ବହିର ଘଟଣା ସତ କି ମିଛ ମୋ’ର ଜାଣିବାର ଦରକାର ନାହିଁ, ତେବେ ରାମଚନ୍ଦ୍ର ବୋଲି ଜଣେ ଲୋକ ଥିଲେ ନିଶ୍ଚୟ । ରାମଚନ୍ଦ୍ରଙ୍କୁ ଉପଲକ୍ଷ କରି ସେତେବେଳର ଅବସ୍ଥା ରାମାୟଣରେ କୁହା ଯାଇଛି । ରାମାୟଣରେ ବୁଝିବାର ବସ୍ତୁ ଅନେକ ରହିଛି । ସେତେବେଳ

ସମୟରେ ରାମଚନ୍ଦ୍ର ଯେଉଁ ଶ୍ରେଣୀର ଲୋକଥିଲେ, ସେହି ସମାଜରେ ହଲଗୃହର ପ୍ରଚଳନ ଆରମ୍ଭ ମାତ୍ର ହୋଇଥିଲା । ମୁଁ ରାମାୟଣ ପଢ଼ି ଏତିକ ମାତ୍ର ବୁଝିଛି, ଯା'ଠାରୁ ବେଶୀ କିଛି ନୁହେ ।

ଆରବଦେଶର କେତେକ ଲୋକଙ୍କୁ ରୁଷଭୀତି ପ୍ରବଳ ଭାବରେ ଦେଖା ଦେଇଥିଲା । ଶ୍ରୋତାଗଣ ଯେତେବେଳେ ଦେଖିଲେ ରାମାୟଣର ବାକି ଗଳ୍ପରେ ମୁଁ ଆଦୌ ଗୁରୁତ୍ୱ ଦେଉ ନାହିଁ ସେତେବେଳେ ସେମାନେ ମୋତେ ବୁଝାଇ ବସିଲେ ଯେ ରାମାୟଣ ସତ୍ୟ ଘଟଣା, ରାମାୟଣର ଗୋଟିଏ ବୋଲି ଶବ୍ଦ ମନଗଢ଼ା ନୁହେ । ଯେଉଁ ସମାଜରେ ଅଦରକାରୀ ବସ୍ତୁ ଅନେକ ଅଛି ସେମାନେ ଅପରର ଅଦରକାରୀ ବସ୍ତୁକୁ ମଧ୍ୟ ଭଲ ବୋଲି ଘରେ ରଖିବାକୁ ଅନୁରୋଧ କରନ୍ତି । ରାମାୟଣ ଭିତରେ ଯେଉଁ ସବୁ ଅଦରକାରୀ କଥା ଅର୍ଥାତ୍ ବାହୁଲ୍ୟ ରହିଛି ସେଇ ସବୁକୁ ପରିତ୍ୟାଗ କଲେ ଉପସ୍ଥିତ ଆରବଙ୍କ କଥାରେ ମଧ୍ୟ ଯେଉଁ ବାହୁଲ୍ୟ ରହିଛି ତାକୁ ପରିତ୍ୟାଗ କରିବାକୁ ପଡ଼ନ୍ତା ।

କଥା ପ୍ରସଙ୍ଗରେ ଜଣେ ଆରବ କହିଲେ, "ଆପଣଙ୍କ ଦେଶରେ ସୋଭିଏଟ ରୁଷ ସମ୍ବନ୍ଧରେ କି ଭଳି ପ୍ରଚାର ହୁଏ ଆମେ ଜାଣୁନାହିଁ । ଆମ ଦେଶରେ କିନ୍ତୁ ବିଦେଶୀ ପ୍ରଚାରକ ଦ୍ୱାରା ନାନା ପ୍ରକାର କଥା ଶୁଣିବାକୁ ପାଉ । ଆପଣ ଅନେକ ଦେଶ ବୁଲି ଆସିଛନ୍ତି, ସେଥିପାଇଁ ଆପଣଙ୍କଠାରୁ ରୁଷ ସମ୍ବନ୍ଧରେ କେତୋଟି କଥା ଜାଣିବାର ଆଗ୍ରହ ଅଛି । ପ୍ରଚାରକଗଣ କହନ୍ତି "ରୁଷଦେଶରେ ବ୍ୟକ୍ତିଗତ ସମ୍ପତ୍ତି ବୋଲି କାହାର ନାହିଁ । ସ୍ତ୍ରୀଲୋକମାନେ ମଧ୍ୟ ସର୍ବ ସାଧାରଣଙ୍କ ସମ୍ପତ୍ତି ଭାବରେ ପରିଣତ ହୋଇଅଛନ୍ତି ।" ଲୋକଟିର କଥା ଶୁଣି ମନେ ହେଲା ଆରବରେ ସୋଭିଏଟ ସମ୍ବନ୍ଧରେ ଏକ ଭ୍ରାନ୍ତ ପ୍ରଚାର ଭଳି



ଭାବରେ ଚଳିଛି । କିନ୍ତୁ ଏହି ଭଳି ଭ୍ରାନ୍ତ ପ୍ରବୃତ୍ତିର ତ ସୁବିଧା-ଜନକ ନୁହେଁ । ବର୍ତ୍ତମାନ ମଧ୍ୟ ଆରବ ଦେଶରେ ଜଣେଲୋକ ଚାରିଗୋଟି ପର୍ଯ୍ୟନ୍ତ ସ୍ତ୍ରୀ ବିବାହ କରେ । ଯେଉଁ ଦେଶରେ ଜଣେ ଲୋକ ଚାରିଗୋଟି ସ୍ତ୍ରୀ ବିବାହ କରିବାଟା ଏକ ଆଇନ ସଙ୍ଗତ ବ୍ୟାପାର ସେହି ଦେଶର ସ୍ତ୍ରୀ ଲୋକଙ୍କୁ ଏବଂ ସାଧାରଣଙ୍କ ସମ୍ମତିରେ ପରିଣତ କରିବାର ପ୍ରବୃତ୍ତିର ତ ଦୋଷାବହ ନୁହେଁ ।

ରାତି ଚାରିଟା ପରେ ଶୋଇବାକୁ ଯାଇ ଦେଖିଲି ମୋ'ର ନିର୍ଦ୍ଦିଷ୍ଟ ବିଛଣାରେ ଅନ୍ୟ ଜଣେ କେହି ଶୋଇଅଛି । ଷ୍ଟେସନ ମାଷ୍ଟର ସେ ଦୃଶ୍ୟ ଦେଖି ସହ୍ୟକରି ନ ପାରି ତାକୁ ଧୀରେ ଧୀରେ ଉଠାଇ ତା ପଛରେ ଗୋଇଠା ମାରି ତଡ଼ିଦେଲେ । ଲୋକଟି କିଛି ନ କହି ନୀରବରେ ଯାଇ ଅନ୍ୟ ଗୋଟିଏ ବିଛଣାରେ ଶୋଇପଡ଼ିଲା । କେତୋଟି ଘଣ୍ଟା ଆରାମରେ ଶୋଇ ନିଦରୁ ଉଠିଲି । ଷ୍ଟେସନମାଷ୍ଟର ଥିଲେ ନାହିଁ । ସେ ତାଙ୍କ କାମରେ ବାହାରି ଯିବା ବେଳେ ମୋ'ର ଖାଇବାର ବ୍ୟବସ୍ଥା କରି ଯାଇଥିଲେ, ଆଉ ବାବିଲୋନ ଯିବା ପାଇଁ ଗୋଟିଏ ଠାଙ୍ଗା ଭଡ଼ା କରିଦେବା ପାଇଁ କହି ଯାଇଥିଲେ । ବାବିଲୋନ ଯିବା ପାଇଁ ପ୍ରସ୍ତୁତ ହୋଇ ସହକାରୀ ଷ୍ଟେସନ ମାଷ୍ଟରଙ୍କ ସହ ସାକ୍ଷାତ କଲି । ତାଙ୍କୁ ଦେଖି କାଲି ରାତିର କଥା ମନେ ପଡ଼ିଲା । ଏହି ଭଦ୍ରଲୋକ ତ ଷ୍ଟେସନ ମାଷ୍ଟରଙ୍କ ଠାରୁ ଗୋଇଠା ମାଡ଼ ଖାଇଥିଲେ । ପ୍ରକାଶ୍ୟରେ କିଛି ନ କହି କେବଳ ଠାଙ୍ଗା କଥା କହିଲି । ସେ ଗୋଟାଏ ଠାଙ୍ଗା ଡାକି ମୋତେ ବାବିଲୋନ ବାଟରେ ବିଦାୟ କରିଦେଲେ । ବାବିଲୋନ ଦେଖି ଯେତେ ବେଳେ ଫେରି ଆସିଲି, ସେ ବାବିଲୋନ ସମ୍ବନ୍ଧରେ ମୋତେ ଅନେକ କଥା ପ୍ରଶ୍ନ କଲେ । କଥା ପ୍ରସଙ୍ଗରେ ଟିକିଏ ଓଲଟ ପାଲଟ କରି ମୁଁ ଗତରାତିର କଥା ଉତ୍ଥାପନ କଲି । ସହକାରୀ ଷ୍ଟେସନମାଷ୍ଟର ଜାତିରେ ଇହୁଦୀ । ମୋ କଥା ଶୁଣି ସେ ସଙ୍ଗେ

ସଙ୍ଗେ ଉତ୍ତର ଦେଲେ— "ଷ୍ଟେସନ ମାଷ୍ଟର ବଡ଼ ପାଜି । ଅନେକ କଥା ଭାବି ମୁଁ ତାଙ୍କୁ କିଛି କହିଲି ନାହିଁ, ତା ନ ହେଲେ ମାରପିଟ୍ ପର୍ଯ୍ୟନ୍ତ ଚାଲି ଯାଇଥାନ୍ତା । ଫଳରେ ଆମ-ଭିତରୁ କେହି ହେଲେ ଜଣେ ଆହତ ହୋଇ ଥାନ୍ତା । ଶେଷରେ ଦୋ'ଜଣଙ୍କୁ ଅଦାଲତକୁ ଯିବାକୁ ପଡ଼ନ୍ତା। ଆଉ ଉଭୟଙ୍କର ଧନ-କ୍ଷୟ ପୁଣି ପରିଶ୍ରମ ସାର ହୁଅନ୍ତା । ଏଇ ସବୁ ଅଦରକାରୀ ଗୋଳମାଳରୁ କ୍ଷାନ୍ତ ରହିବା ପାଇଁ ମୁଁ ନୀରବରେ ସେହି ଅପ-ମାନ ସହିଗଲି" । ତାଙ୍କ କଥା ଶୁଣି ମୁଁ ପ୍ରକାଶ୍ୟରେ କହିଲି, "ଭଲ କରିଛନ୍ତି"; ଆଉ ମନେ ମନେ ଭାବିଲି—ଏଇଥି ପାଇଁ ତୁମେ ଭାରତୀ, 'ପୃଥିବୀର କେଉଁଠି ହେଲେ ତୁମର ସ୍ଥାନ ନାହିଁ ! ତୁମ୍ଭେମାନେ ପ୍ରକୃତରେ ଶ୍ରୀ ଚୈତନ୍ୟ ଆଉ ବୁଦ୍ଧଙ୍କର ପଟ୍ଟଶିଷ୍ୟ !

ବାବିଲୋନ । ପୃଥିବୀରେ ସାତୋଟି ଆଶ୍ଚର୍ଯ୍ୟ ବସ୍ତୁ ଅଛି। ତା'ର ଭିତରେ ବାବିଲୋନ ଗୋଟିଏ । ଇଂରାଜ ଲେଖକଗଣ ବାବିଲୋନ ସମ୍ବନ୍ଧରେ କ'ଣ ସବୁ ଲେଖିଛନ୍ତି ମୁଁ ଜାଣେ ନାହିଁ । ତେବେ ଏତିକି ଜାଣେ ଯେ ସେମାନେ ଲେଖିଛନ୍ତି 'ଓଭାର ହେଙ୍ଗିଙ୍ଗ୍ ଗାର୍ଡେନ ଅଫ୍ ବାବିଲୋନ,' ମୁଁ ଆଜି ସେହି ଆଶ୍ଚର୍ଯ୍ୟ ବସ୍ତୁ ଦେଖିବାକୁ ଚାଲିଛି । ଗୋଟିଏ ଘୋଡ଼ା ଯେଉଁ-ଗାଡ଼ିକୁ ଟାଣି ନେଇଯାଏ ତାକୁ ଟାଙ୍ଗା କହନ୍ତି । ଟାଙ୍ଗା ଭାର-ତୀୟ ଶବ୍ଦ । ମୁଁ ମଧ୍ୟ ଏହି ଶବ୍ଦ ବ୍ୟବହାର କଲି, କାରଣ ଆର-ବରେ ଟାଙ୍ଗାର ପ୍ରଚଳନ ଥିଲା ନାହିଁ । ପଞ୍ଜାବୀମାନେ ଆରବକୁ ଆସି ଟାଙ୍ଗାର ପ୍ରଚଳନ କରିଅଛନ୍ତି । ଟାଙ୍ଗା ଚାଳକ ହିନ୍ଦି ଜାଣିଥିଲା । ସୁତରାଂ କଥାବାର୍ତ୍ତା କରିବାକୁ ମୋ'ର କୌଣସି ଅସୁବିଧା ହୋଇ ନ ଥିଲା । ଆମକୁ ଚାରିମାଇଲ ବାଟ ଯିବାକୁ ହେବ । ରାସ୍ତାର ଦୁଇପାଖରେ ବାଲି । ବାଲିଗୁଡ଼ିକ ଚମ୍‌କାଉ ଥିବା ଦେଖିଲି । ସେଥିରେ ପ୍ରଚୁର ଫାସ୍‌ଫରାସ୍ ଆଉ ଫେଲସ୍-





ପାର ଥିଲା । କେବଳ ସମୁଦ୍ରକୂଳର ବାଲିରେ ଫସ୍‌ଫରସ୍ ଫେଲ୍‌ସ୍‌ପାର ପ୍ରଚୁର ପରିମାଣରେ ଥାଏ । ଗୃହମାଇଲ ବାଟ ଅତିକ୍ରମ କରି ଠାଗାରୁ ଓହ୍ଲାଇଲି । କିଛିଦୂର ଚାଲିଗଲା ପରେ ଗୋଟିଏ ପଥର ମୂର୍ତ୍ତି ଦେଖିଲି । ମୂର୍ତ୍ତିଟି ଗ୍ରେନାଇଟ୍ ପଥରରେ ତିଆରି । ପଥରଟା ବେଶ୍ ଚିକ୍କଣ । ମୂର୍ତ୍ତିଟିର ଆକୃତି—ଗୋଟିଏ ଲୋକ ଶୋଇଛି ଆଉ ତା'ର ଉପରେ ଗୋଟିଏ ସିଂହ ତାକୁ ମାଡ଼ିବସି ଯେପରି ଖାଇବାକୁ ଯାଉଛି । ମଣିଷର ଶରୀରର ଗଠନ ବାନର-ମଣିଷ ପରି । ଗୋଡ଼ହାତ ଛୋଟ ଛୋଟ, ଛାତି ଓସାରିଆ କପାଳ ମଧ୍ୟ ଚଉଡ଼ା, କାନ ବଡ଼ବଡ଼ । ମୁଣ୍ଡର ବାଳ-ଗୁଡ଼ିକ ଲମ୍ବା ହେଲେ ମଧ୍ୟ ଯେଉଁମାନେ କେବେ ବାଳ କାଟନ୍ତି ନାହିଁ କିମ୍ବା ତା'ର ଯତ୍ନ ନିଅନ୍ତି ନାହିଁ ତାଙ୍କର ବାଳ ଯେପରି ଛୋଟ ଛୋଟ ଥାଏ, ଏହି ଲୋକଟିର ବାଳ ମଧ୍ୟ ଠିକ୍ ସେହିପରି । ଦାନ୍ତ ଟିକିଏ ଲମ୍ବା ହେଲେ ମଧ୍ୟ ପଶୁପରି ନୁହେଁ । ଗାଲ ଲମ୍ବା ଆଖି କୋଠରଗତ । ଆଖି ଖୁବ୍ ଛୋଟ ଏବଂ ଭ୍ରୂ ଦୁଇଟିରେ ଖୁବ୍ କମ୍ ବାଳ ଅଛି । ଶରୀରର ଗଠନ ଆଉ ମୁହଁ ଆଡ଼କୁ ଲକ୍ଷକରି ଦେଖିଲେ ଲୋକଟିକୁ କ୍ଳାନ୍ତ ବୋଲି ମନେ ହୁଏ । ସିଂହଆଡ଼କୁ ଚାହିଁଲେ ମନେ ହୁଏ—ସେଇଟା ଯେପରି ଏ ଯୁଗର ସିଂହ ନୁହେଁ । ସିଂହର ବେକଠାରୁ ଲାଞ୍ଜ ପର୍ଯ୍ୟନ୍ତ ଶରୀରର ଅନୁପାତରେ କମ୍ ଲମ୍ବା । ବେକର କେଶର ମଧ୍ୟ ଛୋଟ ଛୋଟ । ପାଦର ନଖ ଶକ୍ତ ଆଉ ଛୋଟ ଛୋଟ । ମୁହଁର ଦାନ୍ତ ଖୁବ୍ ଛୋଟ ଆଉ ତୀକ୍ଷ୍ଣ, ଆଖି ଖୁବ୍ ଉଜ୍ଜ୍ୱଳ ଏବଂ ଛୋଟ । ମୁଖ ବିବର ଛୋଟ ଏବଂ ଲକ୍ଷ ଦୃଢ଼ । ପାଖରେ ଏହି ମୂର୍ତ୍ତିର ଛବି ବିକ୍ରି ହେଉଥିଲା । ସେଥିରୁ ଗୋଟିଏ କିଣି ଦେଖିଲି, ମୂର୍ତ୍ତିର ସମସ୍ତ ଅଂଶ ଛବିରେ ଉଠି ନାହିଁ ।

ମୂର୍ତ୍ତିର ଖୁବ୍ ପାଖରେ ଗୋଟିଏ ପ୍ରକାଣ୍ଡ ଗହ୍ୱର । ସେହି ଗହ୍ୱର ଭିତରେ ଝର ଝର ପାଣି ବାହାରୁ ଥିଲା । ଯେଉଁମାନେ

ଏହି ପୁରାତତ୍ତ୍ୱର ରକ୍ଷଣାବେକ୍ଷଣ କରନ୍ତି ସେମାନେ ପମ୍ପ୍ ସାହାଯ୍ୟରେ ପାଣି ବାହାର କରୁଥିଲେ । ଗହ୍ୱରର ତଳକୁ ଓହ୍ଲାଇବାର ବ୍ୟବସ୍ଥା ଅଛି, ମୁଁ ତଳକୁ ନ ଓହ୍ଲାଇ ଉପରେ ବସି ଗୋଟିଏ ଇଟା ପରୀକ୍ଷା କରିବାକୁ ଲାଗିଲି । ଇଟା ଖଣ୍ଡିକ ଧୂସର ରଙ୍ଗର । ଟିକିଏ ଭାଙ୍ଗି ଦେଖିଲି ଯେ ଭିତରଟା ମଧ୍ୟ ଧୂସର ରଙ୍ଗ । ସେ ଇଟା ଆରବଯୁଗର ଇଟା ନୁହେଁ । ଆରବଯୁଗର ଇଟା ସାନ ଏବଂ ପତଳା ଆଉ ସେଥିରେ କର୍ମନିପୁଣତା ଦେଖିବାକୁ ମିଳେ । ବାବିଲୋନର ଇଟାରେ ତା'ର ଅଭାବ ଦେଖା ଯାଉଥିଲା । ମାଟି ଦେଖିଲେ ଜଣାଯାଏ ଯେ ଏହି ସ୍ଥାନଟି ଦିନେ ସମୁଦ୍ରକୂଳରେ ଅବସ୍ଥିତ ଥିଲା । ଦୁଇଶହ ସତୁରି ମାଇଲ ବ୍ୟାପି ଅଞ୍ଚଳଟି ନଦୀର ପଟୁ ଆଉ ସମୁଦ୍ରର ଢେଉ ଦ୍ୱାରା ଆନୀତ ବାଲିରେ ଚଡ଼ା ପଡିବାକୁ ନିଶ୍ଚୟ ଅନେକ ହଜାର ବର୍ଷ ଲାଗି ଯାଇଥିବ ।

ମୋ'ର ମନେହୁଏ, ଆମଦେଶର ନବ୍ୟ ଇଂରାଜୀଶିକ୍ଷିତ ସମାଜ ବାବିଲୋନ ସମ୍ବନ୍ଧରେ ପୂର୍ବରେ କିଛି ଜାଣି ନ ଥିଲେ । ଇଂରାଜୀ ସାହିତ୍ୟରେ ସେମାନେ ଓଭାର ହେଙ୍ଗିଙ୍ଗ୍ ଗାର୍ଡେନ ବୋଲି ଯାହା କିଛି ପଢିଥିଲେ ଆଉ ତାର ଅନୁବାଦ କରିଥିଲେ "ଶୂନ୍ୟର ଉଦ୍ୟାନ" । ତାକୁ ସନ୍ଧିକରି ଭୂଗୋଳରେ ଲେଖାହେଲା "ଶୂନ୍ୟୋଦ୍ୟାନ" । ଏହିପରି ଭାବରେ ଅନୁବାଦ କାର୍ଯ୍ୟ ତାଙ୍କର ଆଦୌ ତ୍ରୁଟି ନୁହେଁ, କାରଣ ସେତେବେଳର ପଦ୍ୟ ବହିଗୁଡ଼ିକରେ ମଧ୍ୟ ଏହିପରି ଅନେକ ମନଗଢ଼ା କଥା ଭରି ରହିଥିଲା ।

ତାଙ୍କ କଥା ଛାଡ଼ି ବର୍ତ୍ତମାନ ଅସଲ କଥା ଶୁଣ । ଉଚ୍ଚ ଭୂମି ଉପରେ ସିଡ଼ି ବାନ୍ଧି ବଗିଚା ପ୍ରସ୍ତୁତ କରା ହୋଇଥିଲା । ସାଧାରଣ ସିଡ଼ି ଯେପରି ଭାବରେ ଧୀରେ ଧୀରେ ଉପରକୁ ତୀର୍ଯ୍ୟକ୍ ଭାବରେ ଯାଇ ପୁଣି ଆସି ମାଟିରେ ଲାଗେ, ଏ ଗୁଡ଼ିକ



କିନ୍ତୁ ସେତିକି ନ ଥିଲା । ଏହି ସିଁଡ଼ିଗୁଡ଼ିକ ତୀର୍ଯ୍ୟକ ଭାବରେ ସମୁଦ୍ର ଆଡ଼କୁ ଝୁଙ୍କି ପଡ଼ିଥିଲା । ସେଥିପାଇଁ କୁହାଗଲା ଓଭର ହେଙ୍ଗିଙ୍ଗ୍ ଗାର୍ଡେନ ।

ବାବିଲୋନ ଏତେ ପ୍ରାଚୀନଯୁଗର ସ୍ଥାନ ଯେ ବର୍ତ୍ତମାନ ମଧ୍ୟ ପ୍ରତ୍ନତତ୍ତ୍ୱ ବିତ୍‌ଗଣ ତା'ର ସମୟ ନିରୂପଣ କରିବାକୁ ଅକ୍ଷମ ହୋଇ ଯାଆନ୍ତି । ଅତି ପୁରାତନ ଯୁଗରେ ବାବିଲୋନ ୟୁଇଟ୍ରିର ବଢ଼ା ଜମି ଉପରେ ଗଢ଼ା ହୋଇଥିଲା । ଏହାପରି ବଗିଚା ସେତେବେଳେ ପୃଥିବୀ ମଧ୍ୟରେ ବୋଧହୁଏ ଏହି ଏକ-ମାତ୍ର ଥିଲା । ସେଥିପାଇଁ ଏହି ବଗିଚାର ଏତେ ନାମ, ଆଉ ପୃଥି-ବୀର ସାତୋଟି ଆଶ୍ଚର୍ଯ୍ୟ ମଧ୍ୟରେ ସେ ମଧ୍ୟ ସ୍ଥାନ ପାଇଛି । ଅବଶ୍ୟ ବଗିଚା ମଧ୍ୟରେ ବିସ୍ମୟର କଥା ଅନେକ ରହିଛି, କିନ୍ତୁ ସେହି ବିସ୍ମୟ ସାଧାରଣ ଲୋକଙ୍କ ପାଖରେ କିଛି ନ ଥିଲା, ବର୍ତ୍ତମାନ ମଧ୍ୟ ନାହିଁ । ଇତିହାସକୁ ଧରି ଯେଉଁମାନେ ଗବେଷଣା କରନ୍ତି ତାଙ୍କ ନିକଟରେ ବାବିଲୋନ ସପ୍ତାଶ୍ଚର୍ଯ୍ୟ ମଧ୍ୟରୁ ଗୋଟିଏ ଆଶ୍ଚର୍ଯ୍ୟ ହୋଇପାରେ କିନ୍ତୁ ଅନ୍ୟଲୋକ ପାଖରେ ତାହା ସେହି କାହାଣୀବାଲୁ କଥିତ ଘୋଡ଼ାଡିମ୍ବ ବ୍ୟତୀତ ଅନ୍ୟ କିଛି ନୁହେଁ ।

ମୁଁ କିଛି ବୁଝିପାରିଲି ନାହିଁ, ଘୋଡ଼ାଡିମ୍ବ ଦେଖିଲି କି ଆଉ କ'ଣ ଦେଖିଲି । କିନ୍ତୁ ବାବିଲୋନ ମୋ'ର ଦୃଷ୍ଟିଶକ୍ତିର ତୀକ୍ଷ୍ଣତା ବଢ଼ାଇ ଦେଇଥିଲା । ମୋ ଭିତରେ ଯେଉଁ ସଙ୍କୀ-ର୍ଣ୍ଣତା ଥିଲା ତା'ର ଗୋଟିଏ ପ୍ରସ୍ତ ବାବିଲୋନ ଗୋଟିଏ ଫୁତ୍କା-ରରେ ଉଡ଼ାଇ ନେଇ ଆରବ ସାଗରରେ ଫିଙ୍ଗି ଦେଇଥିଲା । ମୁଁ ଏହାପରେ ପୃଥିବୀଟାକୁ ସ୍ୱତନ୍ତ୍ର ଦୃଷ୍ଟିରେ ଦେଖିବାକୁ ଆରମ୍ଭ କଲି । ସେହି ଫୁତ୍କାରର କଥା ବର୍ତ୍ତମାନ ମଧ୍ୟ ମନେ ରହିଛି । ବର୍ତ୍ତମାନ ମଧ୍ୟ ମନେ ପଡ଼େ ନର ଆଉ ସିଂହର ଯୁଦ୍ଧ । ମଣିଷ ପରାଜିତ ଆଉ ପଶୁ ବିଜିତ । ଆଦିମ ଯୁଗରେ ମଣିଷ ପଶୁକୁ ଭୟକରି ଚଳୁଥିଲା, ଆଉ ବର୍ତ୍ତମାନ ଯୁଗରେ ମଣିଷ

ପଶୁକୁ ଭକ୍ଷ୍ୟକରେ ନାହିଁ, ପଶୁକୁ ପଶୁ ଭଳି ହତ୍ୟାକରେ । ମଣିଷ ବର୍ତ୍ତମାନ ଯୁଗରେ ପଶୁଜନ୍ମୀ । ଆଜି ଯଦି ବାବିଲୋନର ସିଂହ ଉପରେ ଗୋଟିଏ ମଣିଷକୁ ବସାଇ ଦେଇ ତା ହାତରେ ଗୋଟିଏ ପିସ୍ତଲ୍ ଧରାଇ ଦିଆଯାଆନ୍ତା, ତାହା ହେଲେ ଅନ୍ୟାୟ ହୁଅନ୍ତା ନାହିଁ ନିଶ୍ଚୟ ! ସୁତରାଂ କୁହାଯାଏ, ମଣିଷର ଉନ୍ନତି ପଥରେ ପରିବର୍ତ୍ତନର ସାକ୍ଷ୍ୟ ।

ଆଜି ଆମେ ଯେପରି ଭାବରେ ବାବିଲୋନ ସମ୍ବନ୍ଧରେ ଭାବୁଛୁ, ଦଶବର୍ଷ ଆଗରେ ରକେଟ୍, ଉଡ଼ନ୍ତା ବୋମା, ଇଲେକ୍‌ଟ୍ରୋନ ସମ୍ବନ୍ଧରେ କେହି ଭାବି ନ ଥିଲେ । ମଣିଷ ନିଶ୍ଚୟ ଉନ୍ନତି ପଥରେ ଅନେକ ଆଗେଇ ଯାଇଛି । ବାବିଲୋନ ଦେଖି ଏହା ଅନୁଭବ କରି ପାରୁଛି ବୋଲି ମୁଁ ଗର୍ବ ଅନୁଭବ କରେ ।

ସେଇଦିନ ସନ୍ଧ୍ୟା ବେଳକୁ ଗାଡ଼ି ପାଇ ବସୋରା ଆଡ଼କୁ ଚାଲିଲି । ଗାଡ଼ିରେ ଅନେକ ପ୍ରକାରର ଯାତ୍ରୀ ଥିଲେ । ମୁଁ କାହାରି ସଙ୍ଗରେ କଥା ନକହି ନୀରବରେ ବସି ରହିଲି । କିଛି ସମୟ ପରେ ଜଣେ ଭାରତୀୟ ଯାତ୍ରୀ ଗାଡ଼ିରେ ଉଠିଲେ । ଭାରତୀୟ ଯାତ୍ରୀଙ୍କ ମୁଣ୍ଡରେ ଫେଜ୍ ଟୋପି ଥିଲା । ଦେହର ରଙ୍ଗ ତାଙ୍କର କଳା । ରେଙ୍ଗୁନରୁ ଆସୁଥାନ୍ତି । ମୋତେ ଦେଖି ତାଙ୍କର କାହିଁକି ଏକ ଅଦ୍ଭୁତ ଧାରଣା ହେଲା ବୁଝି ପାରିଲି ନାହିଁ । କିଛିକ୍ଷଣ ପରେ ସେ ମୋ ପାଖକୁ ଆସି ପଚାରିଲେ—"ଆପଣଙ୍କୁ ରେଙ୍ଗୁନରେ କେଉଁଠି ଦେଖିଛି କହି ପାରିବେ କି ?" ମୋତେ ସେଠାରେ ଦେଖିଥାଇ ପାରନ୍ତି । ଭାରତର ଅଧୂରେଖା ବ୍ରହ୍ମ ପ୍ରଦେଶ ଗୋଟାଯାକ ମୁଁ ବୁଲିଛି । ସେ ଥିଲେ ଜାତିବାଦୀ । ଜାତିବାଦୀଗଣ ଭୟଙ୍କର ଭାରତୀୟ ବିଦ୍ୱେଷୀ, ଅତି ଫେନାଟିକ୍ । ବ୍ରହ୍ମ ପ୍ରଦେଶକୁ ଭାରତର ଅଧୂ ରେଖା କହିବାରୁ ସେ ଭୀଷଣ ରାଗି ଉଠିଲେ ଆଉ ମୋତେ ଲକ୍ଷ୍ୟକରି ବାରମ୍ବାର

କହିଲେ—"ବ୍ରହ୍ମଦେଶବାସୀଗଣଙ୍କର ଆପଣାର ଭାଗ୍ୟ ନିର୍ଣ୍ଣୟ କରିବାର ଅଧିକାର ରହିଛି, ଆମେ ସବୁ ଭାରତ ସହିତ ରହିବାକୁ ଚାହୁଁନା।" ତାଙ୍କ ସହିତ ଅନେକ କଥା ହେଲା କିନ୍ତୁ ମୁଁ ଏଠାରେ ବ୍ରହ୍ମ ପ୍ରଦେଶର କଥା ଟାଣି ଆଣିବାକୁ ପସନ୍ଦ କରୁନାହିଁ। ତେବେ ଏତିକି କହିବାର ଅଧିକାର ମୋ'ର ମଧ୍ୟ ଅଛି ଯେ ଯେଉଁମାନେ ସୋଭିୟେଟ୍ ରୁଷିଆର ଅନୁକରଣ କରି ସେଲଫ ଡିଟାରମିନେଶନ୍ କଥା କହନ୍ତି, ଉଜ୍‌ବେଗୀ ସ୍ଥାନର ଉଲ୍ଲେଖ କରନ୍ତି। ସେମାନେ ଜାଣନ୍ତି ନାହିଁ ଯେ ଉଜ୍‌ବେଗଗଣଙ୍କୁ ମଣିଷ କରିବାକୁ ଷ୍ଟାଲିନ୍‌ଙ୍କୁ କେତେ କଷ୍ଟ ଉଠାଇବାକୁ ପଡ଼ିଛି। ପ୍ରଥମେ ନିଜେ ମଣିଷ ହୋଇ ଅପରଙ୍କୁ ମଣିଷ କର, ତା'ପରେ ସେଲଫ ଡିଟାରମିନେଶନ କଥା କୁହ, ତା' ଆଗରୁ ନୁହେଁ। ସେଲ୍‌ଫ ଡିଟାରମିନେଶନର ଅର୍ଥ ନାନା ଭାବରେ କରାଯାଇ ପାରେ। ସାମ୍ରାଜ୍ୟବାଦୀ ବ୍ରିଟିଶ ମଧ୍ୟ ସେଲ୍‌ଫ ଡିଟାରମିନେଶନର ନାମ ଧରି ଅନେକ ଦେଶ ଲୁଟ୍ କରି ରାଜତ୍ୱ କରୁଛି।

ରାତି ପାହିଲା ବେଳକୁ ଟ୍ରେନ ଆସି ମାରଗିଲ ରେ ଛିଡ଼ା ହେଲା। ଷ୍ଟେସନରୁ ବାହାରି ରେଲ୍‌ୱେ ଗାର୍ଡ଼ମାନଙ୍କ ମେସରେ ଯାଇ ପହଞ୍ଚିଲି। ଜଣେ ଗାର୍ଡ଼ ତାଙ୍କ ମେସକୁ ଯିବା ପାଇଁ ମୋତେ ଆଗରୁ କହିଥିଲେ। ଆରବ ଏବଂ ଭାରତୀୟ ଉଭୟ ଜାତିର ଲୋକେ ଗୋଟିଏ ମେସ୍‌ରେ ରହନ୍ତି। ମେସ୍‌ର ପୂଜାରୀ ଜଣେ ଇହୁଦୀ। ତା'ର ରନ୍ଧା ମୁଁ ଖାଇ ନାହିଁ, କିନ୍ତୁ ତା'ର ପୋଷାକ ଦେଖିଲା ବେଳକୁ ମୋତେ ବଡ଼ ହସ ମାଡୁଥିଲା। ଲାଲ୍ ଫେଜ୍ ମୁଣ୍ଡରେ ପିନ୍ଧି ଗୋଡ଼ ପର୍ଯ୍ୟନ୍ତ ଲମ୍ବା କୋଟ ଉପରେ ଅଣ୍ଟାରେ ଗୋଟିଏ ଲମ୍ବା ଲୁଗା କମରବନ୍ଧ ପରି ବାନ୍ଧି ଯେତେବେଳେ ସେ ବଜାର ବୁଲି ଆସୁଥିଲା, ମୁଁ କେବଳ ତାକୁ ଚାହିଁ ରହୁଥିଲି। ଏ ଅଞ୍ଚଳର ଆରବଗଣ ମୁଣ୍ଡରେ ଫେଜ୍ ପିନ୍ଧନ୍ତି

ନାହିଁ । ଧନେ ତୁରୁକ୍‌ଗଣ ମୁଣ୍ଡରେ ଫେଜ୍ ପିନ୍ଧୁଥିଲେ ବୋଲି ଆଜି ମଧ୍ୟ ଯେଉଁମାନେ ତୁରୁକଙ୍କୁ ଭୟଙ୍କର ଚଳନ୍ତି ସେମାନେ କେବଳ ଫେଜ୍ ବ୍ୟବହାର କରନ୍ତି । ଅରବର ଅରବଗଣ ଯେପରି ଫେଜ୍ ବ୍ୟବହାର କରନ୍ତି ନାହିଁ ସେହିପରି ପାନ୍ ଇସ୍‌ଲାମରେ ମଧ୍ୟ ଯୋଗ ଦିଅନ୍ତି ନାହିଁ । ପାନ୍ ଇସ୍‌ଲାମରେ ବର୍ତ୍ତମାନ ମଧ୍ୟ ତୁରୁକ୍ ଭୟ ଜଡ଼ିତ ରହିଛି । ଅରବ ବହୁଦିନ ଧରି ତୁର୍କୀର ଅଧୀନରେ ଥିଲା । ସେଥିପାଇଁ ସେମାନେ ଆଜି ସେହି ତୁରୁକ୍ ନୀତି ମାନିବାକୁ ରାଜି ନୁହନ୍ତି । ଆମ ଦେଶରେ ଯେପରି ଶିକ୍ଷିତ କାଷ୍ଟ ମୁସଲମାନଙ୍କ ସଙ୍ଗରେ ଚଳିବାକୁ ରାଜି ପଛକେ ପାନ୍ ହିନ୍ଦୁ ଦଳରେ ଯୋଗ ଦେବାକୁ ରାଜି ନୁହନ୍ତି, ସେହି ପରି ଅରବରେ ପାନ୍‌ଇସଲାମ୍ ଅଚଳ ହୋଇ ପଡ଼ିଛି ।

ପାନ୍‌ଇସ୍‌ଲାମ ସମ୍ବନ୍ଧରେ ମୁଁ କେବେ ମୁହଁ ଖୋଲି କିଛି କହି ନାହିଁ, କିନ୍ତୁ ଅନେକ ଅରବ ମୋତେ ପାନ୍ ଇସ୍‌ଲାମର ପ୍ରତିନିଧି ଭାବି ଏ ସମ୍ବନ୍ଧରେ ଅନେକ କଥା କହି-ଛନ୍ତି । ମୁଁ ତାଙ୍କର ସବୁ କଥା ଖୁବ୍ ଆଗ୍ରହ ସହକାରେ ଶୁଣିଛି କିନ୍ତୁ ଉତ୍ତର ଦେବା ବେଳରେ ମୁଁ ଜଣେ ସାଧାରଣ ଭୂପର୍ଯ୍ୟ-ଟକ ବୋଲି ପରିଚୟ ଦେଇ ଏହି ସବୁ ଅଦରକାରୀ ବ୍ୟାପାରରୁ ରକ୍ଷା ପାଇଛି ।

ମର୍‌ଗିଲରୁ ବସୋରା ପାଞ୍ଚ ମାଇଲ ଦୂର । ପ୍ରତି ପାଞ୍ଚ ମିନିଟ ଛଡ଼ା ବାସ୍ ଯିବା ଆସିବା କରେ । ପରଦିନ ବସୋରା ଯିବାକୁ ବାହାରିଲି । ପୀଚ୍‌ଢଳା ରାସ୍ତାର ଦୁଇ ପାଖରେ ଏକ ପ୍ରକାର ଲମ୍ବା ଘାସ ହୋଇଛି । ସେଇ ଘାସ ଗୁଡ଼ିକ ଅତି ସରୁ ଆଉ ତା'ର ଦୁଇ ପାଖ ଯାକ ଟିକିଏ ଧାରୁଆ । ଗରମ ଦେଶର ବାଲି ଉପରେ ଏହିପରି ଘାସ ପ୍ରାୟ ଦେଖାଯାଏ । କିନ୍ତୁ ଅର-ବର କବି ଏହି ଘାସର ସୌନ୍ଦର୍ଯ୍ୟ ଲେଖି, ତା'ର ଗୀତ ଗାଇ ଗାଇ ରବୀନ୍ଦ୍ର ରଚନାବଳୀକୁ ବହୁ ପଛରେ ପକାଇ ଅନେକ

ଅଡେଗଇ ଯାଇଛନ୍ତି । ବସୋରା ସମୁଦ୍ର କୂଳରେ ଅବସ୍ଥିତ ନୁହେ । ସମୁଦ୍ରରୁ କେତୋଟି ଉଲଟା ଜଳସ୍ରୋତ ( Back-water. ) ଆସି ବସୋରାର ଡାହାପାଖ ବେଢ଼ି ରହିଛି । ଅନ୍ୟ କଥାରେ କହିବାକୁ ହେଲେ, ସମୁଦ୍ର ଭିତରେ ସାନ ସାନ ଭୂମିଖଣ୍ଡ ଉପରେ ବସୋରା ସହର ଗଢ଼ି ଉଠିଛି । ବସୋରାରେ କେତୋଟି ବଗିଚା ଅଛି । ସେଥିରେ ଗୋଲାପ ଗଛ ହୁଏ । ସେହି ଗୋଲାପ ଅନ୍ୟ ଦେଶର ଗୋଲାପ ଅପେକ୍ଷା ଠିକ୍ ଏ ବୋଲି ଉତ୍କୃଷ୍ଟ ନୁହେ, ତେବେ ସୁଦ୍ଧା କବି ଗାଇଛନ୍ତି ବସୋରାର ଗୋଲାପ କଥା । ସେହି ସଙ୍ଗୀତର ଢେଉ ଆରବ ସାଗର ଅତିକ୍ରମ କରି ଭାରତବର୍ଷରେ ଆସି ପହଞ୍ଚିଛି । ଭାରତବାସୀ ଭାବେ ଯେ ବସୋରା କେବଳ ଗୋଲାପମୟ । ସତ କହିବାକୁ ହେଲେ କଲିକତାର କୌଣସି ଗୋଟିଏ ୱାର୍ଡ଼ର ଗୋଲାପ ଫୁଲକୁ ଏକତ୍ରିତ କଲେ ବସୋରାର ଗୋଲାପର ପରିମାଣରୁ ଅନେକ ବେଶୀ ହେବ । ମୁଁ ସାଇକେଲ ଧରି ବସୋରାର ଗୋଲାପୋଦ୍ୟାନ ଦେଖିବାକୁ ବାହାରି ଦୁଇଶହ ଫୁଟନ୍ତା ଗୋଲାପ ମଧ୍ୟ ଦେଖିବାକୁ ପାଇ ନାହି । ବସୋରା ଆରବବାସୀଙ୍କର ପ୍ରିୟ, ସୁତରାଂ ତାଙ୍କ ପାଖରେ ବସୋରା ଗୋଲାପରେ ଭରା । ବସୋରାର ନିକଟବର୍ତ୍ତୀ ଅଞ୍ଚଳରେ ଅନେକ ଐତିହାସିକ ସ୍ଥାନ ଅଛି । ମୁଁ ସେ ଅଞ୍ଚଳକୁ ଯିବାକୁ ସମୟ ପାଇ ନାହିଁ କିମ୍ବା ସେ ସବୁର ଆକର୍ଷଣ ମୋ'ର ଥିଲା ନାହିଁ । ମୁଁ ମାରଗିଲର ବାବୁ ରୋଡ଼ରେ ଅନେକ ଦିନ ରହିଛି ଆଉ ବାବୁରୋଡ଼ କଥା ଭାବି ଆଖିରୁ ଦୁଇ ବିନ୍ଦୁ ଲୁହ ମଧ୍ୟ ଢାଳିଛି । ଶୁଣାଯାଏ ବାବୁ ରୋଡ଼ ବାବୁମାନଙ୍କ ଦ୍ୱାରା ପ୍ରସ୍ତୁତ ହୋଇଥିଲା, ହରଫି ନାମକ ଜଣେ ଶିଖ ରାସ୍ତା ପ୍ରସ୍ତୁତ କଲା ବେଳେ ସୁପର ଭାଇଜର ଥିଲେ । ଆଜ ବାବୁ ରୋଡ଼ର ଦୁଇ ପାଖରେ ସୁନ୍ଦର ଫୁଲର ବଗିଚା ହୋଇଛି । ସେହି ବଗିଚାରେ ଗୋଲାପ ଫୁଟେ । ପ୍ରତି ପ୍ରଭାତରେ ବାବୁରୋଡ଼ ଗୋଲାପ ଗନ୍ଧରେ ଆମୋଦିତ

ହୋଇ ଉଠେ । ବାବୁ ରୋଡ଼ରେ ବାବୁଙ୍କ ଦ୍ୱାରା ପ୍ରେରିତ ଗୋଲାପର ଗନ୍ଧ ଅନୁଭବ କରିବାର ସୌଭାଗ୍ୟ ମୁଁ ଅର୍ଜନ କରିଥିଲି । ବାବୁରୋଡ଼ର କଥା ଅନେକେ ଭୁଲି ଯାଇଥିଲେ କିନ୍ତୁ ସେଇ ବାବୁରୋଡ଼ ପୁଣି ଲୋକାରଣ୍ୟ ହୋଇ ଉଠିଛି ବର୍ତ୍ତମାନ ମହାସମର ପାଇଁ । ଭବିଷ୍ୟତରେ କିନ୍ତୁ ବାବୁରୋଡ଼ର ମହାତ୍ମ୍ୟ ଆଉ ରହିବ ନାହିଁ । ଭାରତ ସହିତ ଇରାକର ରେଲ-ପଥ ନିଶ୍ଚୟ ମିଳିତ ହେବ । ପୁଞ୍ଜିବାଦୀ ଜାହାଜ କୋମ୍ପାନୀର କଥା ଭବିଷ୍ୟତରେ କେହି ଶୁଣିବେ ନାହିଁ । ମାରଗିଲର ବୈଚିତ୍ର୍ୟମୟ ବିଶିଷ୍ଟତା ନିଶ୍ଚୟ ଲୋପ ପାଇବ ।

## ସିରିଆ

ମୁଁ ବାଟର ବାଟୋଇ । ସେଥି ପାଇଁ ବାଟ ଘାଟର କଥା କହିବାକୁ ଭଲ ପାଏ । ମୋ କଥା ଭିତରେ ସାହିତ୍ୟର ଗନ୍ଧ ବାସନା ନାହିଁ, ଅକପଟ ଭାବରେ ବାଟର କଥା ଛନ୍ଦହୀନ ଭାବରେ ଗାଇ ଯିବାଟା ହେଉଛି ମୋ'ର ଚିରନ୍ତନ ଅଭ୍ୟାସ । ଯେଉଁମାନେ ଆରବ ସଭ୍ୟତା ସମ୍ବନ୍ଧରେ କିଛି ଜାଣନ୍ତି, ସେମାନେ ଦାମସ୍କସ ନଗରୀ ସମ୍ବନ୍ଧରେ ଅଳ୍ପ ବହୁତ ଖବର ନିଶ୍ଚୟ ରଖନ୍ତି । ତା ସଙ୍ଗେ ସଙ୍ଗେ ଏହା ମଧ୍ୟ ମନେ ରଖିବାକୁ ହେବ ଯେ, ପୃଥିବୀ ପରିବର୍ତ୍ତନଶୀଳ । କେହି କେବେ ଭାବି ନ ଥିଲା ଯେ ମରୁଭୂମି ଉପରେ ମୋଟର ବାସ୍ ଛୁଟି ଚାଲିବ । କେହି ଭାବି ନ ଥିଲେ, ଅଖଣ୍ଡ ଆରବଦେଶ ନାନା ଭାଗରେ ବିଭକ୍ତ ହେବ ! କିନ୍ତୁ ଆଜି ଆରବର ମରୁଭୂମି ଉପରେ ବିଜୁଳି ଆଲୁଅ ଜଳୁଛି, ମରୁଭୂମି ଉପରେ ମୋଟର ଗାଡି ଯିବା ଆସିବା କରୁଛି, ଆରବ ଜାତି ପରିବର୍ତ୍ତନ ଆଡ଼କୁ ଦ୍ରୁତ




ଗଡ଼ରେ ଅଟେଇ ଚାଲିଛି । ଇଉରୋପୀୟ ପର୍ଯ୍ୟଟକଗଣ ସେ ସମ୍ବାଦ ପ୍ରକାଶ କରିବାକୁ ଭଲ ପାଆନ୍ତି ନାହିଁ, କାରଣ ସେମାନେ ଜାଣନ୍ତି, ଆରବ ଜାତିଙ୍କୁ ପ୍ରାଧାନ୍ୟ ଦେଲେ ଧନେ ତାଙ୍କର ନିଜର ଅସୁବିଧା ହେବ । ମୁଁ କିନ୍ତୁ ସେହି ଶ୍ରେଣୀର ଲୋକ ନୁହେ । ମୋ'ର ଦେଶ ଯେପରି ପରାଧୀନତାର ନାଗ ପାଶରେ ଆବଦ୍ଧ, ଆରବ ଜାତିର ଅବସ୍ଥା ମଧ୍ୟ ଅନେକ ପରି-ମାଣରେ ସେହିରୂପ ଧରି ଛିଡ଼ା ହୋଇଛି । ସୁତରାଂ ଆରବ ଜାତିର ସମସ୍ତ ଖବର ଖୋଲି କହିବାରେ ମୋ'ର ଚରମ ଆନନ୍ଦ !

ଆରବର ମରୁଭୂମିରେ ପରାଧୀନତା ବୋଲି କୌଣସି ଶବ୍ଦ ଥିଲା ନାହିଁ । ଆରବ ବେଦୁଇନ କେବେହେଲେ କାହାରି ପାଖରେ ମଥା ନତ କରି ନାହିଁ । ଆରବ ବେଦୁଇନ କେବଳ ମଥା ନତ କରେ ତା'ର ଅଲ୍ଲା ନିକଟରେ, ଆଉ ମଥା ନତ କରେ ଯେତେବେଳେ ତରବାରିର ଆଘାତରେ ମଥା ତା'ର ସ୍କନ୍ଧଚ୍ୟୁତ ହୁଏ । ଆରବ ଦେଶର ଭିକାରି ସୁଦ୍ଧା ଉନ୍ନତ ମସ୍ତକରେ "ଜାକାତ" ଆଦାୟ କରେ, ଭିକ୍ଷା ସେ ଚାହେଁନାହିଁ ।

ବାଗଦାଦ୍‌ରୁ ଦାମସ୍କସ୍ ତିନିଶହ ଏକଷଠି ମାଇଲ୍ ଦୂରରେ ଅବସ୍ଥିତ । ଏହି ଦୂରତ୍ୱ ଭିତରେ ଚାରିଶହ ମାଇଲ କେବଳ ମରୁଭୂମି । ମଝିରେ ମଝିରେ ମରୁଦ୍ୟାନ ଅଛି । କିନ୍ତୁ ବାଗ୍‌ଦାଦରୁ ସାଢ଼େ ତିନିଶହ ମାଇଲ୍ ନଗଲେ ଗୋଟିଏ ମଧ୍ୟ ମରୁଦ୍ୟାନ ଦେଖିବାକୁ ମିଳେ ନାହିଁ । ଶିକ୍ଷିତ ଭାରତବାସୀଗଣ ମୋତେ ସେହିଭଳି ମରୁଭୂମି ଭିତରେ ସାଇକେଲ ଘେନି ଚାଲି ଯିବାକୁ ଉପଦେଶ ଦେଇଥିଲେ । ମୁଁ କିଛି ଦୂର ମଧ୍ୟ ଅଗ୍ରସର ହୋଇଥିଲି କିନ୍ତୁ ସୌଭାଗ୍ୟ ବଶତଃ ପୁଣି ଫେରି-ଆସିଲି, ନହେଲେ ଅଜି ଆଉ ମୋତେ ଏହି ଭ୍ରମଣ କାହାଣୀ ଲେଖିବାକୁ ପଡ଼ନ୍ତା ନାହିଁ । ମରୁଭୂମି ମଝିରେ କେଉଁଦିନ

ବାଲିର ସମାଧି ଲଭି ସାରନ୍ତିଣି । ଆମ ଦେଶର ସଂବାଦ ପତ୍ରରେ ବୋଧହୁଏ ପ୍ରକାଶ ପାଇଥାନ୍ତା ଯେ, ଭଦ୍ରଲୋକ ପୃଥିବୀ ଭ୍ରମଣରେ ବାହାରିଥିଲେ, କେଉଁଠି ଯାଇ ଘର ସଂସାର ଆଉ କଲେ କି ?

ଆଗରୁ କହିଛି ଆରବ ଦେଶକୁ ଇଉରୋପର ସାମ୍ରାଜ୍ୟବାଦୀଗଣ ଖଣ୍ଡ ଖଣ୍ଡରେ ବିଭକ୍ତ କରି ମନର ଆରମାନ୍ ମେଣ୍ଟାଇ ଶୋଷଣର ବ୍ୟବସ୍ଥା କରିଛନ୍ତି । ଇରାକରୁ ସିରିଆ ଯିବାକୁ ହେଲେ ଫରାସୀ ସରକାରଙ୍କର ଅନୁମତି ପତ୍ର ନେବାକୁ ହୁଏ । ଏହି ଅନୁମତି ପତ୍ରର ନିୟମ ଉଠାଇ ଦେବାପାଇଁ ତଥା ଅନ୍ୟାନ୍ୟ କେତେକ କାରଣରୁ ସଂଘବଦ୍ଧ ହେଲାପରେ ସିରିଆବାସୀଗଣ ଥରେ ବିଦ୍ରୋହ କରିଥିଲେ । କିନ୍ତୁ ବିଦ୍ରୋହ ବିଫଳ ହେଲା । ଫରାସୀଙ୍କର ଇପ୍ସିତ ଅନୁମତି ପତ୍ରହିଁ କାଏମ ରହିଲା । ମୋତେ ମଧ୍ୟ ସେହି ଅନୁମତି ପତ୍ର ବା ( ଭିସା ) ନେବାକୁ ପଡ଼ିଥିଲା ।

ଭିସା ପାଇବା ଏକ କଷ୍ଟକର ବ୍ୟାପାର । ଅନେକ ସମୟରେ ପ୍ରଶ୍ନର ଉପଯୁକ୍ତ ଜବାବ ନ ଦେଇ ପାରିଲେ ଅନୁମତି ପତ୍ର ଆଦୌ ମିଳିବ ନାହିଁ । ମୋତେ ଭିସା ନେବାକୁ ସେହିପରି କଷ୍ଟ ଉଠାଇ ବାକୁ ପଡ଼ିଥିଲା ।

ବାଗଦାଦ୍‌ରୁ ଅନେକ ଗୁଡ଼ିଏ ବାସ୍ ଦାମସ୍କସକୁ ଯାଏ । ଗୋଟିଏ ବାସରେ ମୁଁ ଦୁଇ ପାଉଣ୍ଡ ( ଛବିଶ ଟଙ୍କା ଦଶଅଣା ) ଭଡ଼ା ଦେଇ ଗୋଟିଏ ଟିକେଟ କିଣି ଦିନେ ସକାଳୁ ହାରୁଣ୍-ଅଲ୍-ରସିଦଙ୍କର ବାଗଦାଦ ଛାଡ଼ି ଐତିହାସିକ ନଗର ଦାମସ୍କସ ଆଡ଼କୁ ବାହାରିଲି ।

ବାଗଦାଦ୍ ଛାଡ଼ିବା ଆଗରୁ ଜଣେ ପୋଲିସ ଅଫିସର ଆସି ଯାତ୍ରୀମାନଙ୍କ ସଂଖ୍ୟା, ଜିନିଷପତ୍ରର ଓଜନ ଭଲଭାବରେ ପରୀକ୍ଷା କରି ପ୍ରଥମେ ନିଜେ ମୋଟର ଡ୍ରାଇଭରକୁ ସାମରିକ

ଢଙ୍ଗରେ ଅଭିବାଦନ କଲେ । ଡ୍ରାଇଭର କେବଳ ତା'ର ଡାହାଣ ହାତକୁ ମୋଟରର ହେଣ୍ଡେଲ ଉପରେ ରଖିଲା । ଅଫିସର ଜାତିରେ ଆସୀରସ୍ୟାନ, କିନ୍ତୁ ଆସୀରସ୍ୟାନଙ୍କ ପରି ନାଣ ଦାଢ଼ି ରଖି ନାହାନ୍ତି । ଏକା ବେଳେକେ ଚିକଣା ମୁହଁ ।

ଫେଲୁଜା ପର୍ଯ୍ୟନ୍ତ ସୁନ୍ଦର ରାସ୍ତା ଉପରେ ଆମର ବାସ୍ ଚାଲିଲା । ଆଗରୁ କହିଛି ଆରବଗଣ ଭାରତବାସୀଙ୍କୁ ଆଦୌ ପସନ୍ଦ କରନ୍ତି ନାହିଁ । ଅଧିକନ୍ତୁ ମଧ୍ୟ କହିଛି ଯେ କେଉଁ କାରଣରୁ ହିନ୍ଦମାନଙ୍କ ପ୍ରତି ଆରବଗଣଙ୍କର ଘୃଣାର ସଞ୍ଚାର ହୋଇଛି । କିନ୍ତୁ ମୋ ପ୍ରତି ସେମାନେ କୌଣସି ଅସଦ୍ ବ୍ୟବହାର କରି ନାହାନ୍ତି । ମୁଁ ତାଙ୍କ ଦେଶକୁ ଗଲା ପରେ କେବେହେଲେ ଏମିତି କିଛି କହିନାହିଁ, ଯାହା ତାଙ୍କର ଜାତୀୟ ଭାବରେ କୌଣସି ପ୍ରକାର ଅପମାନ କରିପାରେ ।

ଆଗରୁ ଥରେ ସାଇକେଲରେ ଫେଲୁଜା ଦେଖି-ବାକୁ ଆସିଥିଲି । ଛୋଟ ଗାଁଟିଏ । ଗାଁ ପାଖରେ ନଦୀ ବୋହି ଯାଉଛି । ଏଠାର ଅଧିବାସୀମାନଙ୍କ ଭିତରେ ପ୍ରାୟ ଅଧିକାଂଶ ସୁନ୍ନି ସମ୍ପ୍ରଦାୟର ଲୋକ । ଏମାନେ ସମସ୍ତେ ଶ୍ୱେତ ଜାତି ଆରବ । ନିଗ୍ରୋ, ଅର୍ଦ୍ଧନିଗ୍ରୋ, ହିନ୍ଦୁ, ଇହୁଦୀ ପ୍ରଭୃତି ଜାତିଙ୍କ ସହି ତାଙ୍କର ବୈବାହିକ ସମ୍ବନ୍ଧ ହୁଏ ନାହିଁ । ସୁନ୍ନୀଙ୍କ ସମାଜରେ ପ୍ରଚଳିତ ଅଛି ଯେ, ଯେ କୌଣସି କଳାଜାତିର ସ୍ତ୍ରୀ ଲୋକ ତାଙ୍କ ଘରକୁ ଦାସୀ ଭାବରେ ଆସିପାରେ କିନ୍ତୁ ତାଙ୍କ ଘରର ସ୍ତ୍ରୀ ଲୋକ କୌଣସି ପ୍ରକାରରେ କଳା ଲୋକର ସ୍ତ୍ରୀ ହୋଇ ପାରିବ ନାହିଁ । ସେଥିପାଇଁ ଏଠାକୁ ମୁଁ ଆଗରେ ଯେତେବେଳେ ଆସିଥିଲି, ସେତେବେଳେ ଇହୁଦୀ, କୃଷ୍ଣଜାତି ଆରବ ମୋ'ର ଆଦର ଯତ୍ନ ବେଶୀ କରିଥିଲେ । ଶ୍ୱେତଜାତି ଆରବ କ୍ୱଚିତ ତାଙ୍କ ଘରକୁ ଡାକି ଚା' ଜଳଖିଆ ଖୁଆଇ ଥିଲେ । ଏସବୁ ଅଞ୍ଚଳରେ କେହି କେବେ ହେଲେ ମୋ'ର

ଧର୍ମ ସମ୍ବନ୍ଧରେ କିଛି ପଚାରି ନାହାନ୍ତି । ଦିନେ ଆରବ ଦେଶରେ ଏହି ଧର୍ମ ସମ୍ବନ୍ଧରେ ଅନେକ ଆଲୋଚନା ଚାଲି-ଥିଲା । ବର୍ତ୍ତମାନ କିନ୍ତୁ ଆରବ ଜାତି ଜାତୀୟ ଭାବାପନ୍ନ ହୋଇ-ଛନ୍ତି, ସେଥିପାଇଁ ବୋଧହୁଏ ତାଙ୍କର ଚିନ୍ତାଧାରା ମଧ୍ୟ ବଦଳି ଯାଇଛି । କିନ୍ତୁ ବଡ଼ ଦୁଃଖର କଥା ଆରବଦେଶରେ ବର୍ତ୍ତମାନ ସୁଦ୍ଧା ବର୍ଣ୍ଣ ବିଦ୍ୱେଷ ଅଛି ଦେଖି ମୋ ମନରେ ଶାନ୍ତି ଆସୁ ନ ଥିଲା । ଅନେକ ସମୟରେ ଶ୍ୱେତକାୟ ଆରବ ତା'ର ହାତର କମିଜଟା ଟିକିଏ ଘୁଞ୍ଚାଇଦେଇ ଦେଖାଇ କହନ୍ତି "ଦେଖ, ମୋ'ର ଦେହର ରଙ୍ଗ କପରି ଗୋରା ଆଉ ତୁମର ରଙ୍ଗ କେଡ଼େ କଳା ।"

ଫେଲିକାର ଆରବଗଣ ଶିହା, ସୁନ୍ନୀ, ଖ୍ରୀଷ୍ଟାନ, ଅଗ୍ନି ଉପାସକ, ଜଳ ଉପାସକ, ପଥର ଉପାସକ ଯାହା ହୁଅନ୍ତୁ ପଛକେ, ବିଦେଶୀକୁ ସେମାନେ ଆଦୌ ପସନ୍ଦ କରନ୍ତି ନାହିଁ । ପଞ୍ଜାବର ମୁସଲମାନ ବାରିକ ପାଖରେ କ୍ଷୌର ମଧ୍ୟ ହୁଅନ୍ତି ନାହିଁ । ବୁନ୍ଦେଲଖଣ୍ଡର ଧୋବା ପାଖରେ ଲୁଗା ଦିଅନ୍ତି ନାହିଁ । ବିହାରୀ ଡାକ୍ତର ପାଖରୁ ଔଷଧ ନିଅନ୍ତି ନାହିଁ— ଫଳରେ ଅନେକ ବେଦରକାରୀ ହିନ୍ଦ ଫେଲିକା ଛାଡ଼ି ଚାଲି ଆସିବାକୁ ବାଧ୍ୟ ହୋଇଛନ୍ତି ।

ଫେଲିକାରେ ଥିଲାବେଳେ ଗୋଟିଏ ମାଦ୍ରାସାର ଶିକ୍ଷ-କଙ୍କ ଘରେ ମୁଁ ଅତିଥି ହୋଇଥିଲି । ସେ ଆରବୀ ଭାଷାରେ ମୌଲବୀ ଆଉ ଫରାସୀ ଭାଷାରେ ମେଟ୍ରିକ୍ ପାଶ କରିଥିଲେ । ଅଳ୍ପ ଅଳ୍ପ ଇଂରାଜୀ ମଧ୍ୟ କହିବୋଲି ପାରୁଥିଲେ । ତାଙ୍କର ଉଦାରତାରେ ଗାଁଯାକ ଲୋକ ମୁଗ୍ଧ ଥିଲେ । ସେ ମୋ ଲେକ୍-ଚରକୁ ଗ୍ରାମବାସୀଙ୍କ ପାଇଁ ଜଣେ ଦୋଭାଷୀ ସାହାଯ୍ୟରେ ଅନୁବାଦ କରି ଶୁଣାଇଥିଲେ । ଦୋଭାଷୀ ଭଲ ହିନ୍ଦୁସ୍ଥାନୀ ଜାଣିଥିଲେ, ସେଇଥିପାଇ ସେ ମୋ'ର ମନର କଥାକୁ ସ୍ପଷ୍ଟ-





ଭାବରେ ବୁଝାଇ ପାରୁଥିଲେ । ଦୋଭାଷୀଟି କେବେ ହେଲେ ଭାରତକୁ ଆସି ନାହାନ୍ତି । ସେ ଅନେକଦିନ ମକ୍କାରେ ଥିଲେ ଏବଂ ଭାରତୀୟ ହାଜୀମାନଙ୍କୁ ନାନା ଭାବରେ ସାହାଯ୍ୟ କରୁଥିଲେ । ସେ ଏଡ଼େ ସୁନ୍ଦର ହିନ୍ଦି କହି ପାରୁଥିଲେ ଯେ ମୁଁ ଶୁଣି ଆଶ୍ଚର୍ଯ୍ୟ ହୋଇ ଯାଇଥିଲି । ଆରବ ଜାତିର ମସ୍ତିଷ୍କ ସାଧାରଣତଃ ବଡ଼ ପ୍ରଖର, ତା'ପରେ ପୁଣି ଭଦ୍ରଲୋକ ନାନାଦେଶ ଭ୍ରମଣ କରିଛନ୍ତି । ଗୋଟିଏ ବୈଦେଶିକ ଭାଷାକୁ ଆୟତ୍ତ କରିବା ତାଙ୍କ ପକ୍ଷରେ ସହଜସାଧ୍ୟ ଥିଲେ ମଧ୍ୟ, ଏପରି ସୁନ୍ଦର ଭାବରେ ମୋ କଥାକୁ ସଜାଇ କହି ପାରିବେ ଏହା ମୋ'ର ଧାରଣା ମଧ୍ୟ ନ ଥିଲା ।

ଲେକ୍‌ଚର ଦେଲାପରେ ମାଦ୍ରାସାର ଛାତ୍ରଗଣ ଭାରତ ସମ୍ବନ୍ଧରେ ଗୋଟିଏ ହେଲେ ପ୍ରଶ୍ନ ପଚାରିଲେ ନାହିଁ । ଚିନ ଦେଶରେ କେତେ ମୁସଲମାନ ଅଛନ୍ତି, ସେ କଥା ମଧ୍ୟ ଉଠାଇଲେ ନାହିଁ । ସେମାନେ କେବଳ ପଚାରୁଥିଲେ ଜାପାନୀଗଣ ଯେ ନିଜ ଜାତିର ଉନ୍ନତି ପାଇଁ ହରକିରି କରି ପେଟକାଟି ମରନ୍ତି, ସେହି ଦେଶପ୍ରେମ ତାଙ୍କ ଭିତରେ କିପରି ଭାବରେ ଜାଗ୍ରତ ହେଲା । ଆଉରି ପଚାରୁଥିଲେ, ଚିନଦେଶର ଚୁତେ କେଉଁ ଶକ୍ତିର ସାହାଯ୍ୟ ବଳରେ ଛଅହଜାର ମାଇଲ ଦୂର ପଳାଇବାକୁ ସକ୍ଷମ ହୋଇଥିଲେ । ତାଙ୍କର ଏହି ସବୁ ପ୍ରଶ୍ନର ଉତ୍ତର ମୁଁ ପରଦିନ ଦେଇଥିଲି । ଭାରତକୁ ଫେରି ଆସିଲା ପରେ ଆମଦେଶର ଛାତ୍ରଗଣ ପ୍ରଶ୍ନ କରିଥିଲେ ସ୍ୱାମୀ ବିବେକାନନ୍ଦ କ'ଣ ଆମେରିକାର ସମସ୍ତଙ୍କୁ ହିନ୍ଦୁ କରିଥିଲେ ? ଚିନ ଦେଶରେ କେତେ ମୁସଲମାନ ଅଛନ୍ତି ? ଏଇଠାରେ ଆମ ଭିତରେ ଆଉ ଆରବଙ୍କ ଭିତରେ ପାର୍ଥକ୍ୟ ରହିଛି !

ପରଦିନ ମଧ୍ୟ ଲେକ୍‌ଚର ଦେଇଥିଲି । ଅନେକ ଗଣ୍ୟ ମାନ୍ୟ ବ୍ୟକ୍ତି ସଭାରେ ଉପସ୍ଥିତ ଥିଲେ । ଲକ୍ଷକରି ଦେଖିଲି,

ଆରବଗଣ ପର୍ଯ୍ୟଟନ କଥା ଶୁଣିବାକୁ ବଡ଼ ଭଲ ପାଆନ୍ତି, ଯେତେ କହିଲେ ସେତେ ବେଶୀ ଶୁଣିବାକୁ ଚାହାନ୍ତି । ସେମାନେ ଭ୍ରମଣ କାହାଣୀ ନୀରବରେ ଶୁଣନ୍ତି, ଲେକ୍‌ଚର ଦେଲାବେଳେ କେହି କୌଣସି ପ୍ରକାର ଗୋଳମାଳ କରନ୍ତି ନାହିଁ । କାହାର ଛେପ ପକାଇବା କିମ୍ବା କାଶିବାର ଦରକାର ହେଲେ, ବାହାରକୁ ଉଠି ଯାଆନ୍ତି ପୁଣି ଆସି ନୀରବରେ ବସନ୍ତି । ସୁତରାଂ ଆରବ ସ୍କୁଲରେ କିମ୍ବା ଆରବ ସମାଜରେ ଲେକ୍‌ଚର ଦେବାରେ ଚରମ ଆନନ୍ଦ ଥାଏ ।

ଦିନେ କଷ୍ଟକର ସାଇକେଲରେ ଫେଲୁଜା ଆସିଥିଲି, ସେଇ ଫେଲୁଜାକୁ ଆଜି କେତେ ମିନିଟ ଭିତରେ ପଛରେ ଛାଡ଼ି ତାହାର କଥା ଭାବି ଭାବି ଆଗକୁ ଚାଲିଛି । ଏହିଠାରୁ ଆରମ୍ଭ ହୋଇ ଯାଇଛି ବିସ୍ତୀର୍ଣ୍ଣ ମରୁଭୂମି ।

ମୋଟର ବାୟୁ ଅବିରାମ ଗତିରେ ଚାଲିଛି । ଡ୍ରାଇଭର ଯେତେବେଳେ କ୍ଳାନ୍ତହୋଇ ପଡ଼ୁଥାଏ, ସେତେବେଳେ ଅନ୍ୟ ଡ୍ରାଇଭର ତାହାର ସ୍ଥାନ ପୂରଣ କରି ଦ୍ୱିଗୁଣ ତେଜରେ ଗାଡ଼ି ଚଲାଉଥାଏ । ମୋ ପାଖରେ ଦୁଇଜଣ ଟ୍ରିପୋଲିର ଆରବ ବସିଥିଲେ । ତାଙ୍କ ମୁଣ୍ଡରେ ଲାଲ୍ ଫେଜ୍ ଦେଖି ଭାବିଥିଲି, ସେମାନେ ନିଶ୍ଚୟ ଖ୍ରୀଷ୍ଟାନ କିମ୍ବା ଇହୁଦୀ ହେବେ । କଥା ପ୍ରସଙ୍ଗରେ ସେମାନେ କହିଲେ, ସୁଏଜ୍ କେନାଲର ପଶ୍ଚିମ ପାଖର ଆରବଗଣ ଲାଲ୍ ଫେଜ ବ୍ୟବହାର କରନ୍ତି । ସେମାନେ ମଧ୍ୟ ସୁନ୍ନି ସମ୍ପ୍ରଦାୟର ଲୋକ । ଏ ଅଞ୍ଚଳର ଅର୍ଥାତ୍ ଆରବର ସୁନ୍ନିଗଣ ଭୁଲରେ ମଧ୍ୟ ଫେଜ୍ ମୁଣ୍ଡରେ ଦିଅନ୍ତି ନାହିଁ । ଏହି ପାର୍ଥକ୍ୟର କାରଣ ପଚାରିବାରୁ ସେମାନେ ଉତ୍ତର ଦେଲେ— ଏ ଅଞ୍ଚଳର ସୁନ୍ନି ଆରବଗଣ ପ୍ରାୟ ସମସ୍ତେ ହଜ୍‌କୁ ଯାଇଛନ୍ତି ବୋଲି ହାଜିର ପୋଷାକ ସର୍ବସାଧାରଣଙ୍କ ପୋଷାକ ହୋଇ ପଡ଼ିଛି । ଟ୍ରିପୋଲିରୁ ଅତି ଅଳ୍ପସଂଖ୍ୟକ ଲୋକ ହଜ୍

କରିବାକୁ ଅସନ୍ତି, ସେଥିପାଇଁ ତ୍ରିପୋଲିର ଲୋକେ ଫେଜ୍ ବ୍ୟବହାର କରନ୍ତି । ଇଟାଲୀୟ ଗଣଙ୍କର ଆରବଙ୍କ ପ୍ରତି କ୍ରୀ ଭଳି ବ୍ୟବହାର ପଚ୍ଛୁରିବାରୁ ସେମାନେ ଶତ୍ରୁତର ରହିଥିଲେ, କାରଣ ପାଖରେ କେତେଜଣ ଇଟାଲୀୟ ବସିଥିଲେ । ଆମେ ଯେପରି ଇଂରାଜମାନଙ୍କ ସମ୍ମୁଖରେ ତାଙ୍କର ଜାତିର ଶ୍ରାଦ୍ଧ କରିପାରୁ, ଇଟାଲୀୟଗଣ ସେ ଭଳି ବ୍ୟବହାର ସହ୍ୟ କରନ୍ତି ନାହିଁ । ସିନୋର ମୁଂସୋଲିନୀ ବିରୁଦ୍ଧରେ କୌଣସି କଥା ଶୁଣିଲେ ସେମାନେ ତତ୍‌କ୍ଷଣାତ ତା'ର ପ୍ରତିକାର କରନ୍ତି । ତ୍ରିପୋଲିର ନିଷ୍ଠୁର ଶାସନ ଏବଂ ଶୋଷଣର ନିଦର୍ଶନ ଗାଡ଼ିରେ ବସି ବସି ଅନୁଭବ କରି ପାରିଥିଲି ।

ଯେଉଁ ଜାତି ଯେତେ ଅତ୍ୟାଚାରିତ ହୁଏ, ସେହି ଜାତି ସେତେ ସବଳ ହୋଇ ଉଠେ । ତ୍ରିପୋଲିର ସେହି ଆରବ ଦୁଇଜଣ ଖାଣ୍ଟି ରାଷ୍ଟ୍ରୀୟ ଭାବାପନ୍ନ । ସେମାନେ ବେଲ ଉଣ୍ଡି ମୋ ସହିତ ମୁକ୍ତଭାବରେ କଥାବାର୍ତ୍ତା କରୁଥିଲେ । ଆମ ଦେଶର ଅନେକ ତଥ୍ୟ ସଂଗ୍ରହ କରିଥିଲେ । ମୁଁ ମୁସଲମାନ ନୁହେଁ ବୋଲି ଜାଣି ମଧ୍ୟ ସେମାନେ ପୂର୍ବ ଆଫ୍ରିକାର ପରାଧୀନତା ସହିତ ଭାରତବର୍ଷର ତୁଳନା କରିଥିଲେ । ଯେତେ ସମୟ ତାଙ୍କ ସହିତ କଥାବାର୍ତ୍ତା ହୋଇଥିଲା, ସେଇ ସମୟ ଭିତରେ ସେମାନେ କେବଳ ଇଟାଲୀୟମାନଙ୍କ ବିରୁଦ୍ଧରେ ଆକ୍ଷେପ କରିଥିଲେ । ପରେ ସୁଦ୍ଧା ପାନ ଇସ୍‌ଲାମ କିମ୍ବା ଅନ୍ୟ ମତବାଦର କଥା କହି ନାହାନ୍ତି । ତାଙ୍କ ଭିତରେ କେବଳ ଗୋଟିଏ ପ୍ରକାର 'ପାନ୍'ର ଇଙ୍ଗିତ ଦେଖି ରହିଥିଲା, ତାହା ଅତ୍ୟାଚାରୀ ଏବଂ ଅତ୍ୟାଚାରିତର ସମ୍ବନ୍ଧ ! ସ୍ୱାଧୀନ ଏବଂ ପରାଧୀନ ! ସ୍ୱାଧୀନ-ତାର ସ୍ୱାଦ ଯେଉଁମାନେ ପାଆନ୍ତି, ସେମାନେ ଭୁଲରେ ମଧ୍ୟ କ୍ଷୁଦ୍ରଭାବ ମନରେ ପୋଷଣ କରନ୍ତି ନାହିଁ । ଯେଉଁମାନେ ଆଜୀ-ବନ 'ଗୋଲାମ' ହୋଇ ରହିବାକୁ ଚାହାନ୍ତି, ସେହିମାନେ

କେବଳ "ପାନ୍‌-ହିନ୍ଦୁଇଜମ୍‌," ବୃହତ୍ତର ଭାରତ, ବୃହତ୍ତର ବଙ୍ଗ, ପାନ୍‌ଇସ୍‌ଲାମର ଦୋହା ଧରି ବସନ୍ତି ।

ଆମ ସାଙ୍ଗରେ କେତେଜଣ ଇରାଣୀ ଯାତ୍ରୀ ମଧ୍ୟ ଥିଲେ । ଜଣେ ଇରାଣୀ କଣ୍ଡକ୍ଟରଙ୍କୁ ନ କହି ବିପଦ୍‌ କାଳପାଇଁ ସଞ୍ଚିତ ଥିବା ପାଣିର ପାଇପ ଖୋଲି ମନଇଚ୍ଛା ପାଣି ପିଉଥିଲା । କଣ୍ଡାକ୍ଟରର ପ୍ରଧାନ କାମହେଲା ପାଣିର ରକ୍ଷଣାବେକ୍ଷଣ କରିବା ଏବଂ ଯାହାପାଇଁ ଯେତେ କମ୍‌ ପାଣି ଦରକାର ହେବ ତାକୁ ସେତିକି ଦେବା । କଣ୍ଡାକ୍ଟର ଇରାଣୀ ଭଦ୍ରଲୋକଙ୍କୁ ପାଣିର ପାଇପ ବନ୍ଦ କରିବାକୁ କହିବାରୁ, ସେ ଆଦୌ ଶୁଣିଲେ ନାହିଁ ବରଂ ଇରାଣୀ ଭାଷାରେ କଣ ଦୁ'ଟିପଦ ତାଚ୍ଛଲ୍ୟ ଭାବରେ ଜବାବ୍‌ ଦେଲେ । ଇରାଣୀ ଭଦ୍ରଲୋକ ଆରବୀ କହୁ ନ ଥିଲେ । ଏଣେ ଆରବୀ କଣ୍ଡାକ୍ଟର ଇରାଣୀ କହିବାକୁ ଘୃଣା ବୋଧ କରୁଥିଲା । ଶେଷରେ ସେମାନେ ଫରାସୀ ଭାଷାରେ ବାଦାନୁବାଦ ଆରମ୍ଭ କଲେ । ତାଙ୍କ କଥାର ସାରମର୍ମ ଯାହା ବୁଝିଥିଲି, ସେଥିରେ ମନେହେଲା, ଇରାକୀ ଆରବଗଣଙ୍କୁ ଇରାଣୀମାନେ ପରାଧୀନ ବୋଲି ଗଣ୍ୟ କରନ୍ତି ଆଉ ସେହି କଥା ଉପରେ ଜୋର ଦେଇ ଇରାଣୀ ଭଦ୍ରଲୋକଟି ପ୍ରତିବାଦ କରୁଥିଲେ ।

ତାଙ୍କର ଗୋଳମାଳ ଯେତେବେଳେ ଚରମକୁ ଉଠିଲା, ସେତେବେଳେ ସମସ୍ତେ ମିଳିମିଶି ଦୁହିଁଙ୍କୁ ବନ୍ଦବାନ୍ଦ୍‌ କରି ଦେଲେ । ଫରାସୀ, ଡାଚ୍‌, ବ୍ରିଟିଶ ଯାତ୍ରୀଗଣ ଏହି ଗଣ୍ଡଗୋଳ ନୀରବରେ ବସି ଶୁଣୁଥିଲେ, ସେମାନେ ମନେ ମନେ କ'ଣ ଭାବୁଥିଲେ, ଭଗବାନ ଜାଣନ୍ତି କିନ୍ତୁ ସମସ୍ତେ ମୁହଁ ବୁଲାଇ ବସିଥିଲେ । ମୁଁ ଦର୍ଶକ ଥିଲି ବୋଲି ପ୍ରତ୍ୟେକଙ୍କ ଆଡ଼କୁ ମୋ'ର ଦୃଷ୍ଟି ଲକ୍ଷ ଥିଲା ।

ସନ୍ଧ୍ୟା ଆଗରୁ ରୁତବା ( Rutba ) ରେ ପହଞ୍ଚିଲୁ । ସେଇଠି ଗାଡ଼ି ବନ୍ଦ ହେଲା । ସମସ୍ତ ଯାତ୍ରୀ ଓହ୍ଲାଇ ପାଖର



କୂଅରୁ ପାଣି ଉଠାଇ ମୁହଁହାତ ଧୋଇ ଟିକିଏ ଶାନ୍ତ ହେଲେ । ଆମେ ସମସ୍ତେ ମୁହଁ ହାତ ଧୋଇଲୁ, କିନ୍ତୁ କେତେଜଣ ଇଉରୋପୀୟ ଅର୍ଥାତ୍ ଇଂରାଜ, ଫରାସୀ ଆଉ ଜର୍ମାନ ମୁହଁ ହାତ ଧୋଇଲେ ନାହିଁ । ଇଟାଲୀୟ ଗଣ କିନ୍ତୁ ଆମ ଭଳି ମୁହଁ ହାତ ଧୋଇ ପକାଇଲେ । ଏହା ଦେଖି ମୁଁ ଭାବିଲି ଯେ ତାଙ୍କ ଆଉ ଆମ ଭିତରେ ବିଶେଷ କିଛି ପାର୍ଥକ୍ୟ ନାହିଁ । ଜଣେ ଇଂରାଜକୁ କାହିଁକି ମୁହଁ ହାତ ଧୋଇଲେ ନାହିଁ, ପଚାରିବ ବାରେ ସେ କହିଲେ, ଏଭଳି ଭାବରେ ମୁହଁ ହାତ ଧୋଇବା ଶିଷ୍ଟାଚାର ବିରୁଦ୍ଧ । ଅନ୍ତତଃ ପକ୍ଷରେ ଗୋଟାଏ ବେସିନ୍ ( ପାତ୍ର ) ଯଦି ଥାଆନ୍ତା ତାହାହେଲେ ସେମାନେ ଅକ୍ଲେଶରେ ମୁହଁ ହାତ ଧୋଇ ପାରି ଥାଆନ୍ତେ ।

ମୁସଲମାନ୍‌ମାନେ ଯେତେବେଳେ ଦକ୍ଷିଣ ଅଡ଼କୁ ମୁହଁ କରି ନମାଜ ପଢୁଥିଲେ ଆଉ ଇଉରୋପୀୟ ଗଣ ତାଙ୍କ ଫ୍ଲାକ୍‌ସରୁ ଚାହା କମ୍ବା କଫି ଢାଳି ପିଉଥିଲେ, ମୁଁ ସେତେବେଳେ ଲୋକଙ୍କର ଆଚାର ବ୍ୟବହାର କଥା ଭାବୁଥିଲି । ଏତେ ଗରମରେ, କେତେ ଧୂଳି ନାକ ଭିତରେ ପଶିଛି, ଆଉ ଏମାନେ ମୁହଁ ହାତ ଧୋଇଲେ ନାହିଁ ଗୋଟିଏ ପାତ୍ରର ଅଭାବରେ ! ଆଚାର ବ୍ୟବହାରର ତ ଏଇଠି ରହିଛି ବଡ଼ ପାର୍ଥକ୍ୟ ! ମୁଁ ଚିନ୍ତାରେ ଏତେ ତନ୍ମୟ ହୋଇ ଯାଇଥିଲି ଯେ କୂଅଟା କେତେ ଗଭୀର, ତା ମଧ୍ୟ ଦେଖି ପାରିଲି ନାହିଁ । ମୁଁ ଯେପରି ବୋଧାତୀତ ହୋଇ ଯାଇଥିଲି ।

ଗାଡ଼ି ଛାଡ଼ିବାର ଅଧଘଣ୍ଟା ଆଗରୁ ହର୍ଣ୍ଣ ଦେବାରୁ ମୋ'ର ଚିନ୍ତା ଭାଙ୍ଗିଲା । ମୁଁ ଶୀଘ୍ର ଶୀଘ୍ର କେଇଟି ରୋଟି ଖାଇ ପକାଇଲି ସେତେବେଳେ ଆଉ କୂଅଟା କେତେ ଗଭୀର ଦେଖିବାକୁ ସମୟ ଥିଲା ନାହିଁ । ଅନ୍ଧକାରର ଅବରଣ ଆରବ୍ୟ ରଜନୀର ମୁହଁ ଉପରେ ଆସି ପଡ଼ିଥିଲା । ମୁଁ ଚିନ୍ତା ଛାଡ଼ି ନିଜ ଆସନରେ

ଯାଇ ବସିବାକୁ ବାଧ୍ୟ ହେଲୁ । ଗାଡ଼ି ପୁଣି ଦ୍ୱିଗୁଣ ତେଜରେ ଚାଲିଲା ।

ଆମେ ବସି ବସି କେବଳ ମରୁଭୂମିରେ ରାତ କଟାଉଛୁ । ଆମର ଆଖି ସବୁ ନିଦର ଆବେଶରେ ବୁଜି ହୋଇ ଆସୁଥିଲା । ବେଳେ ବେଳେ ନିଦ ଆସି ସମସ୍ତଙ୍କ ଅସ୍ତିତ୍ୱ ଭୁଲାଇ ଦେଉଥିଲା । ଆରବ୍ୟ ରଜନୀ ଆମକୁ ସୁଖ ଦୁଃଖ ଭିତରେ ଟାଣି ନେଇ ଯାଉଥିଲା । ଆରବ୍ୟ ରଜନୀ ସବୁବେଳେ ସୁଖପ୍ରଦ । ରାତ ଯେତେ ବେଳେ ଚାରିଟା, ସେତେବେଳେ ହଠାତ୍ ଆମ ବାସ୍‌ଟା ଦୋହଲି ଉଠିଲା ! ବୁଝିଲି, କେଉଁ ଦିନର ଗୋଟିଏ ପ୍ରବାହିତ ନଦୀ ସ୍ରୋତ ଆରବ ମରୁରେ ଲିଭିଯିବା ଆଗରୁ ତାର ସ୍ମୃତି ଚିହ୍ନ ସ୍ୱରୂପ ଗୋଟିଏ ଦାଗ ରଖି ଯାଇଛି । ସେଇ ସ୍ମୃତି ଚିହ୍ନ ଦୋହଲାଇ ଦେଇ ଆମକୁ ନଦୀର ଅସ୍ତିତ୍ୱ ସମ୍ବନ୍ଧରେ ସୂଚନା ଦେଲା । ଆଖି ଖୋଲି ଦେଖିଲି ବାଁ ପାଖରେ ଗୋଟାଏ ବଡ଼ ପାହାଡ଼ । ପାହାଡ଼ଟିର ନାମ "ଜାବଲ୍ ତନେଙ୍ଗ୍" ( Jabalting ) ସେଠାରେ ଆମକୁ ଅନେକ ସମୟ ଅପେକ୍ଷା କରିବାକୁ ପଡ଼ିଲା । ଏଠାରୁ ଫରାସୀ ଅଧିକୃତ ସିରିଆର ସୀମା ଆରମ୍ଭ ହୋଇଛି । ରାତ ପାହିବା ସଙ୍ଗେ ସଙ୍ଗେ ଫରାସୀ କାଷ୍ଟମ ଅଫିସର ଆମକୁ ଆଗେଇ ଯିବାକୁ ହାତହଲାଇ ଆଦେଶ ଦେଲେ । ଆମେ ପୁଣି ଆଗେଇ ଚାଲିଲୁ । ବେଳ ଦଶଟା ସରିକି ଆମେ କାଷ୍ଟମ ଅଫିସରେ ପହଞ୍ଚିଲୁ । ଜଣେ ଫରାସୀ ଅଫିସର ଆମର କାଗଜପତ୍ର ପରୀକ୍ଷା କଲେ । ସେ ପ୍ରତ୍ୟେକଙ୍କ ସହିତ ଭଦ୍ର ବ୍ୟବହାର କରୁଥିଲେ । କିନ୍ତୁ ବାସ ଉପରେ ଜଣେ ତଳ ତଳିଆ ଅଫିସର ମୋ'ର ସାଇକେଲଟା ଅବିଷ୍କାର କଲା । ମୋର ସାଇକେଲ୍ କାହିଁକି ବ୍ରିଟିଶ କାରଖାନାରେ ତିଆରି, ଫରାସୀ କାରଖାନାରେ କାହିଁକି ତିଆରି ନୁହେ ଏହି କଥା ନେଇ ଅନେକ ବେଳ ଯାଏ ତର୍ଜନ ଗର୍ଜନ କରି ଫରାସୀ ଭାଷାରେ କଣ କହିବାକୁ ଲାଗିଲେ । ମୁଁ ହିନ୍ଦିରେ ତା'ର



ଜବାବ ଦେଲି, "ଏଇସା ଧନ୍ ନେହି ରହେଗା" । ମୁଁ ଫରାସୀ ଭାଷାରେ କଥା କହିବାକୁ ଆଦୌ ପସନ୍ଦ କରୁ ନଥିଲି, କାରଣ ଫରାସୀ ସାମ୍ରାଜ୍ୟ ଭିତ ବ୍ରିଟିଶ ସାମ୍ରାଜ୍ୟ ଭିତର ଅନେକ ନିମ୍ନ ସ୍ତରର ।

ତଳିଆ ଅଫିସର ଜଣକ ଯେତେ ଦାନ୍ତ ନିକୁଟି ଥିଲା, ମୁଁ ସେତିକି ହିନ୍ଦରେ ଭଦ୍ର ଭାବରେ ତାକୁ ପ୍ରବୋଧ ଦେଉଥିଲି । ଶେଷ ସିଦ୍ଧାନ୍ତ କରି ରଖିଥିଲି ଯଦି ସେ ମୁହଁ ଉପରେ ଆସି କଥା କହିଥାଆନ୍ତା ତାହାହେଲେ ତା'ର ଗାଲ ଦୁଇଟା ରଙ୍ଗ କରି ଦେଇ ଥାଆନ୍ତି । ଏ ସମ୍ବନ୍ଧରେ ବ୍ରିଟିଶମାନଙ୍କ ପାଖରୁ ଅନେକ ଶିଖିବାର ବିଷୟ ଅଛି । ତୁମେ ପାଟିତୁଣ୍ଡ କରି ଚିତ୍କାର କରି ବ୍ରିଟିଶ କିଛି କହିବ ନାହିଁ । ତୁମେ ମୁହେଁ ମୁହେଁ ବ୍ରିଟିଶକୁ ଦେଶରୁ ବିଦାୟ କରିଦିଅ, ସେ କିଛି କହିବ ନାହିଁ । କିନ୍ତୁ ତୁମେ ଯଦି ତା'ର କୌଣସି ଅନିଷ୍ଟକର କାମରେ ଲାଗିଯାଅ, ଦେଖିବ ସେ ତା'ର ପ୍ରତିକ୍ରିୟା କରିବାକୁ ପାଦେ ହେଲେ ପଛଘୁଞ୍ଚା ଦେବ ନାହିଁ । ମୁଁ ମଧ୍ୟ ସେଇ ନୀତି ଅନୁସରଣ କରି ଫରାସୀ ଅଫିସରର କଥାରେ କାନ ଦେଉ ନଥିଲି । ସ୍ୱାଧୀନ ଦେଶକୁ ଗଲେ ସ୍ୱାଧୀନତାର ସ୍ପନ୍ଦନ ଆପେ ଆପେ ଜାଗି ଉଠେ । ସାହସର ଅଭାବ ହୁଏ ନାହିଁ । ପ୍ରାଣର ମମତା ରହେ ନାହିଁ । ସବୁବେଳେ ମନେହୁଏ, ମୁଁ ମଧ୍ୟ ତାଙ୍କରିପରି ମଣିଷ, ଏବଂ ତାଙ୍କରି ଭଳି କର୍ମ ପ୍ରେରଣାରେ ପରିଚାଳିତ ।

ସେଇ ଅଫିସରଟି ମୋ ପାଖକୁ ଆସିଲା ନାହିଁ । ମୁଁ କିନ୍ତୁ ବୁଝିପାରିଲି ଯେ ସେ ଭବିଷ୍ୟତରେ ମୋ'ର ଅନିଷ୍ଟ କରିବ । ତା'ର ଅନିଷ୍ଟ କରିବାର ଶକ୍ତି କେତେ, ତାହା ମଧ୍ୟ ମୁଁ ଜାଣିଥିଲି । ସୁତରାଂ ନିଶ୍ଚିନ୍ତରେ ବହୁଦୂରରୁ ଦାମସ୍କସର କଥା ଭାବି ଭାବି ଯେତେବେଳେ ଦାମସ୍କସରେ ଆସି ପହଞ୍ଚିଲି ସେତେବେଳେ ଦାମସ୍କସ କଥା କେବଳ ଚିନ୍ତା କରିବାକୁ ଲାଗିଲି ।

ଫରାସୀ ଅଫିସର କଥା ଏକାବେଳକେ ଭୁଲିଗଲି । ସେତେ-ବେଳେ ପୁରାତନ ସଭ୍ୟତା ଭିତରେ ନୂତନ ଜାତୀୟତାବାଦ ପୂର୍ଣ୍ଣ ସୁନ୍ନି ଅରବର ସ୍ୱାଧୀନତା ସ୍ପୃହାର ପ୍ରଗତିର ଢେଉ ଗଣିବାରେ ଲାଗି ପଡ଼ିଥିଲି ।

ଗାଡ଼ିରୁ 'ଓହ୍ଲାଇଲା ପରେ ଦେହଟା ଯେପରି ଝିମ୍‌ଝିମ୍ କରୁଥିଲା, ଭାବୁଥିଲି ଟିକିଏ ସମୟ ପାଇଲେ ଦେହଟାକୁ ଟିକିଏ ମୋଡ଼ାମୋଡ଼ି କରିନେବି । ତା'ପରେ ସାଇକେଲ୍‌ଟା ବାସ୍‌ରୁ ଓହ୍ଲାଇ ପିଠି ଝୋଲାଟାକୁ କେରିଅରରେ ବାନ୍ଧି ହୋଟେଲ୍ ଅଡ଼କୁ ଚାଲିଲି । ହୋଟେଲ୍ ଯେ କୁଆଡ଼େ ତା'ବି ଜାଣେ ନାହିଁ । ତେବେ ଏତିକ ଜାଣିଥିଲି ଯେ ପାଖରେ ନିଶ୍ଚୟ ଫରାସୀ ଗୁପ୍ତଚର ଛିଡ଼ା ହୋଇଥିବ । ସେ ନିଶ୍ଚୟ ମୋତେ ବାଟ ଦେଖାଇ ଦେବ । ଫଳ ମଧ୍ୟ ଠିକ୍ ସେଇଆ ହେଲା । ଜଣେ ଲୋକ ଅଧ ବାଙ୍ଗୁଡ଼ି ଇଂରାଜୀରେ ମୋ ସାଙ୍ଗରେ କଥାବାର୍ତ୍ତା ଆରମ୍ଭ କଲା । ତାଙ୍କୁ ଗୋଟାଏ ଶସ୍ତା ଧରଣର ହୋଟେଲ୍ ଦେଖାଇ ଦେବାକୁ ଅନୁରୋଧ କରିବାରୁ, ସେ ଆନନ୍ଦରେ ସହରର ମଝିରେ ଥିବା ଗୋଟିଏ ଅରବ ହୋଟେଲରେ ନେଇ ପହଞ୍ଚାଇଲା । ଲୋକଟି ବେଶ୍ ରସିକ—ଫରାସୀ ଜାତି ନା ! କହିଲା, ଏଠାରେ ସବୁ ମିଳିବ । ତା'ର କଥାର ତାତ୍ପର୍ଯ୍ୟ ବୁଝି-ବାକୁ ବିଳମ୍ବ ହେଲା ନାହିଁ । ହୋଟେଲର ମାଲିକ ଜଣେ ଅରବ । ମୋତେ ଗୋଟିଏ କୋଠରୀ ଦେଖାଇ ଦେଇ ଚାଲି-ଗଲେ ।

ଆଗରୁ କହିଛି ଭାରତବର୍ଷ, ବର୍ମା ଆଉ ଆଫଗାନି-ସ୍ଥାନକୁ ଛାଡ଼ିଦେଲେ ପୃଥିବୀର ଅନ୍ୟ ସବୁଠାରେ ହୋଟେଲରେ ସମ୍ପୂର୍ଣ୍ଣ ବିଛଣା, ମଶାରି ମିଳେ । ଗାଧୋଇବାର ସମସ୍ତ ସୁବ୍ୟ-ବସ୍ଥା ଅଛି । ବିଛଣା କାନ୍ଧରେ ବୋହି ନେବାକୁ ପଡ଼େ ନାହିଁ, ଅରବ ଦେଶର ହୋଟେଲ୍ ମାନେ ଶୟନାଗାର, ଆହାରର







ସ୍ଥାନ ନୁହେ । ଆରବଗଣ ଏ ଦାଗରେ ଆମ ଦେଶକୁ ଟପି ଯାଇଛନ୍ତି । ଆମେ ତ ବର୍ତ୍ତମାନ ସୁଦ୍ଧା ସେହି ଫିଉଡ଼ାଲ ଅବସ୍ଥାରେ ପଡ଼ି ରହିଛୁ ।

ହୋଟେଲର ମାଲିକ ମୋତେ ପର୍ଯ୍ୟଟକ ଭାବରେ ଗ୍ରହଣ କରି ଖୁବ୍ ଆନନ୍ଦିତ ହେଲେ ସତ, କିନ୍ତୁ ଯେଉଁ ଲୋକଟି ମୋତେ ତାଙ୍କ ହୋଟେଲ ଦେଖାଇ ଦେଇଥିଲା ସେ ପୋଲିଶର ଲୋକ । ସେଥିପାଇଁ ସେ ଦୁଃଖିତ ହୋଇଥିଲେ । ଫରାସୀ ଅଧିକୃତ ଉପନିବେଶ ଗୁଡ଼ିକରେ ପୋଲିଶର ଅତ୍ୟାଚାର ଭୀଷଣ । ଫ୍ରାନ୍ସରେ ମଧ୍ୟ ଫରାସୀ ପୋଲିଶ ନିଜର ଜାତିକୁ ସ୍ନେହର ଦୃଷ୍ଟିରେ ଦେଖେ ନାହିଁ । କିନ୍ତୁ ଆରବ ଜାତି ଲହୁଣୀ ପୁତୁଳା ନୁହେ ଯେ ଖରାତେଜ ଲାଗିଲା ମାତ୍ରକେ ତରଳି ପଡ଼ିବ । ଆରବ ଜାତି ଅତ୍ୟାଚାର ସହ୍ୟ କରେ ନାହିଁ, ନିଜର ପ୍ରାଣଦେଇ ମଧ୍ୟ ଅପମାନର ପ୍ରତିଶୋଧ ନିଏ । କିନ୍ତୁ ଧନୀଗଣ ସାଧାରଣତଃ ବିଳାସୀ । ବିଳାସୀଗଣ ଅପମାନ ସହ୍ୟ କରନ୍ତି, କିନ୍ତୁ ଶାରୀରିକ କଷ୍ଟ ସହ୍ୟ କରିବାକୁ କୁଣ୍ଠିତ ହୁଅନ୍ତି । ହୋଟେଲର ମାଲିକ ଜଣେ ଧନୀ ଆରବ । ସେଥିପାଇଁ ସେ ଟିକିଏ ଦୁଃଖିତ ହୋଇଥିଲେ । ଗାଧୋଇ ସାରି ପାଖର ଗୋଟିଏ ରେସ୍ତୋରାରୁ ଖାଇ ଆସି ବିଶ୍ରାମ ନେବା ଉଦ୍ଦେଶ୍ୟରେ ଦ୍ୱାର ବନ୍ଦ କରିବାକୁ ଯାଉଛି ଏତିକିବେଳେ ଜଣେ ପୋଲିଶ ଆସି କହିଲା ଯେ ଚୂର-ଦିନ ମଧ୍ୟରେ ମୋତେ ସିରିଆ ଛାଡ଼ି ଚାଲିଯିବାକୁ ହେବ । ପୁଲିଶ ଜାତିରେ ଆରବ । ସେ ସେତକ କହି ସାରି ଇଂରାଜୀରେ କହିଲା—ଏଥିପାଇଁ ବ୍ୟସ୍ତ ହେବେ ନାହିଁ, ଇଚ୍ଛାକଲେ ଆଉରି ପନ୍ଦରଦିନ ରହିପାରିବେ; ସ୍ଥାନୀୟ ଇମିଗ୍ରେସନ ଅଫିସର ଜଣେ ଆରବ । ଆପଣ ତାଙ୍କ ସଙ୍ଗରେ ସାକ୍ଷାତ କଲେ ସବୁ ସୁବିଧା ହୋଇଯିବ । ଏତକ କହି ସେ ଚାଲିଗଲା ପରେ ମୁଁ ବିଛଣା ଧରିଲି ।

ଉପରଓଳିଠା ଯାକ ଭଲ ଖାଦଠାଏ ହୋଇଗଲା । ରାତିରେ ଗୋଟିଏ କାଫେରେ ଯାଇ ବସିଲି । ମୋ ଆଖି ପାଖରେ ଯେଉଁମାନେ ବସିଥିଲେ ସମସ୍ତେ ଗଣ୍ୟମାନ୍ୟ ବ୍ୟକ୍ତି ନିଶ୍ଚୟ । ମୋ'ର ପୋଷାକ, ମୋର ସାଇକେଲ ଆଉ ମୋର ଦେହର ରଙ୍ଗ ସମସ୍ତଙ୍କ ଦୃଷ୍ଟିର କେନ୍ଦ୍ରସ୍ଥଳ ହୋଇଥିଲା । ଜଣେ ଭଦ୍ର-ଲୋକ ମୋ'ର ଟେବୁଲ ପାଖକୁ ଆସି ପରିଚୟ ପଚାରିଲେ । ତାଙ୍କର ଧାରଣା ଥିଲା, ଭାରତର ପ୍ରତ୍ୟେକ ନରନାରୀ ତାଙ୍କର ଭଳି । କିନ୍ତୁ ତାଙ୍କର ସେ ଧାରଣା ମୋ ସଙ୍ଗରେ କଥା କହି ଦୂର ହୋଇଗଲା । ସେ ମୋତେ ଆଉ ଜଣେ ଭଦ୍ରଲୋକଙ୍କ ସହ ପରିଚୟ କରାଇ ଦେଲେ । ସେ ଜଣେ ସରକାରୀ କର୍ମ-ଚାରୀ, ଫରାସୀ ଆଉ ଇଂରାଜୀ ଭଲ କହି ବୋଲି ପାରନ୍ତି ।

କଥା ପ୍ରସଙ୍ଗରେ ସେ ମୋଠାରୁ ଭାରତବର୍ଷ ସମ୍ବନ୍ଧରେ ଅନେକ ସମ୍ବାଦ ସଂଗ୍ରହ କରିବାକୁ ଲାଗିଲେ । ମୁଁ ମଧ୍ୟ ଯେତେ-ଦୂର ସମ୍ଭବ ଭାରତବର୍ଷ ସମ୍ବନ୍ଧରେ ତାଙ୍କୁ ସତ୍ୟ ସମ୍ବାଦ ଦେଇ-ଥିଲି । କଥା ଶେଷରେ ମୋ ପ୍ରତି ଯେଉଁ ଆଦେଶ ଜାରି କରା-ହୋଇଛି, ସେ ସମ୍ବନ୍ଧରେ କହିବାରୁ ସେ ମୋ ର ପାସପୋର୍ଟ ଆଉ ସେହି ଆଦେଶପତ୍ର ଭଲ ଭାବରେ ଦେଖି କହିଲେ, ଆପଣ କାଲି ସକାଳେଇ ମିଗ୍ରେସନ ଅଫିସକୁ ଯାଇ ମୋ'ର ଏହି ବନ୍ଧୁଙ୍କ ସହ ଦେଖାକଲେ ଆପଣଙ୍କର ସବୁ ସୁବିଧା ହୋଇଯିବ । ଏଠାରେ ବସି ଯଦି ଜଣେ ଜାତୀୟତାବାଦୀ ହିନ୍ଦୁକୁ ସାହାଯ୍ୟ କରିପାରେ ତେବେ ଜୀବନରେ ଗୋଟିଏ ଭଲକାମ କରି ପାରିଛି ବୋଲି ଗର୍ବ ଅନୁଭବ କରିବି । ଭଦ୍ର-ଲୋକଙ୍କ କଥା ଶୁଣି ମୁଁ ଆନନ୍ଦିତ ହୋଇଥିଲି । ରାତି ଦୁଇଟା ଯାଏ ସେମାନଙ୍କ ସଙ୍ଗରେ ସମୟ କଟାଇ ବସାକୁ ଫେରିଥିଲି ।

ଏମାନେ ସମସ୍ତେ ସୁନ୍ନି ମୁସଲମାନ । ଶିଆଁର ସଂଖ୍ୟା ଗରିଷ୍ଠ ଦଳ ହେଲେ ସୁନ୍ନି ସମ୍ପ୍ରଦାୟ । ସମସ୍ତ ରାଜନୈତିକ






ଅଫିସ ତାଙ୍କର ହାତରେ । ପରେ ଦାମସ୍କସରେ ଭୟଙ୍କର ଗଣ୍ଡଗୋଳ ହୋଇଥିଲା । ପ୍ରଥମେ ସିହା ସୁନ୍ନିଙ୍କ ମଧ୍ୟରେ ଗଣ୍ଡଗୋଳ ଆରମ୍ଭ ହେଲା, କିନ୍ତୁ ସୁନ୍ନିଗଣ ଚାଲାକି କରି ସେହି ଗଣ୍ଡଗୋଳକୁ ସାର୍ବଜନୀନ କରି ପକାଇଲେ । ଫଳରେ ବୈଦେଶିକ ମୂଳଧନରେ ପରିଚାଳିତ ସ୍ଥାନୀୟ ଟ୍ରାମ୍‌କୋମ୍ପାନୀ ବର୍ତ୍ତମାନ ସୁଦ୍ଧା ଅଚଳ ହୋଇ ପଡ଼ିଛି । ପରଦିନ ଦେଖିଲି ପ୍ରତି ରାସ୍ତା ଉପରେ ଟ୍ରାମ ଲାଇନ ପଡ଼ିଛି, କିନ୍ତୁ ଗାଡ଼ି ନାହିଁ । ସହରଟି ଛୋଟ ବୋଲି ଟ୍ରାମ ନ ଥିବାରୁ ସେତେବେଶୀ କଷ୍ଟ ହୁଏ ନାହିଁ । କିନ୍ତୁ କଲିକତା ସହରରେ ଟ୍ରାମ ନଥିଲେ ଆମ୍ଭମାନଙ୍କର କେଡ଼େ କଷ୍ଟ ହୁଅନ୍ତା, ଆଉ କେତେ ଲୋକ ଯେ ବେକାର ହୋଇ ବସି ରହନ୍ତେ ତାର ହିସାବ ରଖିବା କଷ୍ଟ ହୋଇ ପଡ଼ନ୍ତା । ମୁଁ ଯନ୍ତ୍ରର ବଡ଼ ପକ୍ଷପାତୀ, ସେଥିପାଇଁ ଦାମସ୍କସ୍‌ରୁ ଟ୍ରାମ ଉଠି ଯିବାରେ ଦୁଃଖିତ ହୋଇଥିଲି, ଆନନ୍ଦିତ ହୋଇ ନାହିଁ । ଗୋରୁ ଗାଡ଼ିର ଯୁଗକୁ ଫେରିଯିବା ପାଇଁ ମୋର ଆଦୌ ଇଚ୍ଛା ନାହିଁ ।

ଦାମସ୍କସ ସହରରେ ରେସ୍ତୋଁରା ବହୁ ପରିମାଣରେ ଅଛି । ରୋଷାଇ କରିବାକୁ ଯେପରି କେହି ଇଚ୍ଛୁକ ନୁହନ୍ତି । ସମସ୍ତେ ରେସ୍ତୋରାଁରେ ଖାଇ ତୃପ୍ତ ହୁଅନ୍ତି । ଏହି ରେସ୍ତୋଁରା ଗୁଡ଼ିକ ରାଜନୀତିଜ୍ଞ ମାନଙ୍କର ମିଳନ ସ୍ଥାନ, ଚୋର ଡକାଏତଙ୍କର ଆଡ଼ା ଆଉ କୂଟନୈତିକ ମାନଙ୍କର ବିଶ୍ରାମ ସ୍ଥାନ । ରେସ୍ତୋଁରାରେ ବଡ଼ ପାଟିରେ କେହି କଥା ହୁଅନ୍ତି ନାହିଁ । ରାଜନୀତି ବିଷୟରେ ଭଲଭାବରେ ତର୍କ ଯୁଦ୍ଧ ଚାଲିଛି । ଅଥଚ ଅନ୍ୟ ଟେବୁଲରେ ବସିଥିବା ଲୋକେ ତାର ସଂଧାନ ପାଆନ୍ତି ନାହିଁ । ଯେଉଁମାନେ ରାଜନୀତି ଆଲୋଚନା କରନ୍ତି, ଢୋଲ ପିଟି ବାହାଦୁରି ଦେଖାନ୍ତି ନାହିଁ, ନୀରବରେ କାମ କରି ଯାଆନ୍ତି । ମୁଁ ଯେଉଁ ସମୟର କଥା କହୁଛି । ସେତେବେଳେ ଇଟାଲୀ

ଅବସିନୀୟା ଆକ୍ରମଣ କରିଥାଏ, ଜାପାନ ମଞ୍ଚୁରିଆ ଦଖଲ କରି ନେଇଥାଏ । ଭାରତରେ ଅସହଯୋଗ ଆନ୍ଦୋଳନ ଖୁବ୍ ଜୋରରେ ଚାଲିଥାଏ । ତାଙ୍କ ମଧ୍ୟରେ ଯେତେବେଳେ ଆଲୋଚନା ଚାଲିଥାଏ ସିରିଆ ସ୍ୱାଧୀନ ହେବ କି ପରାଧୀନ ହୋଇ ରହିବ । ହିଟଲର ଶକ୍ତିଶାଳୀ ହୋଇ ଉଠିଛି । ଷ୍ଟାଲିନ୍ ଲୋକାନ୍ତ ରାଳରୁ ରୁଷ୍ ଦେଶକୁ ପ୍ରସ୍ତୁତ କରୁ ଥାଆନ୍ତି, ଅଉ ଟ୍ରଟ୍‌ସ୍କି ଉଚ୍ଚସ୍ୱରରେ ଷ୍ଟାଲିନଙ୍କର ମୃତ୍ୟୁକାମନା କରୁ ଥାଆନ୍ତି । ଔପନିବେଶିକ ଦେଶ ଗୁଡ଼ିକ ଷ୍ଟାଲିନ୍ ଏବଂ ଟ୍ରଟ୍‌ସ୍କିଙ୍କର ମତାନ୍ତରକୁ ନିଜ ଭିତରକୁ ଟାଣି ଆଣୁ ଥାଆନ୍ତି । ସିରିଆ ସେଇ ଟଣା ଓଟରା ଭିତରେ ପଡ଼ିଥିଲା । ସୁଖର କଥା, ମୁଁ ଏ ବିଷୟରେ ନୀରବତା ଅବଲମ୍ବନ କରିଥିବାରୁ ବଡ଼ ବିପଦରୁ ରକ୍ଷା ପାଇ ଯାଇଛି । ଆଜି ଯେଉଁମାନଙ୍କ ଭିତରେ ଘନିଷ୍ଠ ବନ୍ଧୁତା କାଲି ଏହି ମତବାଦ ଫଳରେ ସେମାନଙ୍କ ଭିତରେ ପ୍ରବଳ ଶତ୍ରୁତା । ହାଣକାଟ, ଗୁଳିକାଣ୍ଡ ଅନବରତ ଚାଲିଥିଲା । କିଏ କହିବ ସିରିଆ ରାଷ୍ଟ୍ରନୀତି ଦିଗରୁ ପଶ୍ଚାଦ୍‌ପଦ ? କ୍ରମାଗତ ଆଗେଇ ଚାଲିଛି ସେ । ବନ୍ୟାର ସ୍ରୋତରେ ଭସାଇ ଦେଇଛି ଧର୍ମର ବୈଷମ୍ୟ । ମୁଁ ଯେତିକିବେଳେ ସିରିଆର ଗାଁ ଗାଁ ବୁଲିଛି । ସେହି ପୁରାତନ ସ୍ମୃତି ମନେ ପଡ଼ିଲେ ବର୍ତ୍ତମାନ ମଧ୍ୟ ଆନନ୍ଦରେ ଆତ୍ମହରା ହୋଇ ଉଠେ ।

ରାତିରେ ବସାକୁ ଫେରିଲା ବେଳେ ଜଣେ ଦୁଇଜଣ ପୋଲିଶ ମୋର ପାଶ୍‌ପୋର୍ଟର ନମ୍ବର ଟିପି ନେଇଥିଲେ । ଅନେକ କହିଥିଲେ "ପାକ୍‌ତ", 'ପାକତ' ଶବ୍ଦର ଅର୍ଥ ହେଉଛି, ଯାଃ-ଚାଲ୍' ହେୟ ସୂଚକ କଥା । ମୁଁ ତାଙ୍କ କଥାର ଉତ୍ତର ନଦେଇ ହୋଟେଲକୁ ଫେରି ଦ୍ୱାର ଖୋଲିବାକୁ ଯାଉଛି, ହୋଟେଲର ମାଲିକ ଆସି କହିଲେ, "ପୋଲିସ୍ ଆସି ଆପଣଙ୍କୁ ଖୋଜୁଥିଲା ।" ମୁଁ ତାଙ୍କୁ କହିଲି, "ଭୟର କାରଣ କିଛି ନାହିଁ ।

କାଲି ସବୁ ଠିକ୍ ହୋଇ ଯିବ ।" ମୋତେ ଟଙ୍କାଏ ମୋଡ଼ା ଭଡ଼ା କରି ଦେବାକୁ ହୋଟେଲରେ କେହି ଲୋକ ଅଛି କି ନାହିଁ ପଚାରିବାରୁ ସେ କହିଲେ ମୋ ବସାକୁ କେହି ଆସିବେ ନାହିଁ । ପୋଲିସ୍‌ର ନଜରରେ ପଡ଼ିବାକୁ କେହି ରାଜି ନୁହନ୍ତି । ମୁଁ କୋଠରୀ ଭିତରକୁ ଯାଇ ଭିତର ପାଖରୁ ଦ୍ୱାର ବନ୍ଦ କରି ସିରିଆର ମାନଚିତ୍ର ଦେଖିବାକୁ ଲାଗିଲି ।

ପରଦିନ ସକାଳୁ ବଡ଼ ବଡ଼ ମସଜିଦ୍ ଗୁଡ଼ିକ ଦେଖିବାକୁ ଗଲି । ବାହାରେ ଥାଇ ମସଜିଦ୍‌ର କାରୁକାର୍ଯ୍ୟ ଦେଖିଥିଲି । ମସଜିଦ୍‌ର ଭିତରକୁ ଯିବାକୁ କୌଣସି ନିଷେଧ ନାହିଁ । କେବଳ ବାହାରେ ଜୋତା ଖୋଲି ରଖିଲେ ହେଲା । ସହରର ପ୍ରାଚୀନତମ ମସଜିଦ୍ଟି ଦେଖି ସାରି ଜଣେ ଭଦ୍ରଲୋକଙ୍କୁ ପଚାରିଲି, ଏଠାରେ ଆଉ କୌଣସି ଧର୍ମମନ୍ଦିର ଅଛି କି ନାହିଁ ? ସେ ଅନେକ ଗୁଡ଼ିଏ ଗୀର୍ଜାର ନାମ ମୋର ନୋଟ ବହିରେ ଲେଖି ଦେଇ ଧୀରେ ହସି କହିଲେ, ଏଠାରେ ଆଗାଖାଁ ମତା-ବଲମ୍ବୀ ମାନଙ୍କର ଗୋଟିଏ ଗୀର୍ଜା ଅଛି, କିନ୍ତୁ ସେଠାକୁ ଆପଣଙ୍କ ପ୍ରବେଶ ପଥ ବନ୍ଦ । ବାହାରରୁ ଦେଖି ଆସି ପାରନ୍ତି । ଭଦ୍ର ଲୋକଙ୍କୁ ଧନ୍ୟବାଦ ଜଣାଇ ସେ ଦିନକ ପାଇଁ ମୋର ଭ୍ରମଣ ଶେଷକରି ଇମିଗ୍ରେସନ ଅଫିସକୁ ଗଲି । ସେଠାରେ ପୂର୍ବ ପରିଚିତ ଭଦ୍ର ଲୋକଙ୍କ ସହ ସାକ୍ଷାତ କଲାପରେ ସେ 'ଟ୍ରାନଜିଟ୍' ଭିସାକୁ ବର୍ଷକର ଭିସା କରିଦେଲେ । ନୂତନ ଭିସା ସାହାଯ୍ୟରେ ମୁଁ ସିରିଆରେ ବର୍ଷେ କାଳ ରହି ପାରିବାର ଅନୁମତି ପାଇଥିଲି । ଫରାସୀ କାଷ୍ଟମ ଅଫିସରଙ୍କ କ୍ଷମତା ମଧ୍ୟ ଏଇଯାକେ ଥିଲା । ଏଣିକି ମୁଁ ନିଶ୍ଚିନ୍ତରେ ସହର ବୁଲିବାକୁ ବାହାରିଲି ।

ସୁନ୍ନି ସମ୍ପ୍ରଦାୟର ମସଜିଦ ସବୁବେଳେ ସମସ୍ତଙ୍କ ପାଇଁ ଖୋଲା ଥାଏ । ରାତିରେ ମସଜିଦ ଅଗଣାରେ ଅନେକ ଲୋକ

ଶୋଇ ପାରନ୍ତି ମଧ୍ୟ । କିନ୍ତୁ ଶିହାମାନଙ୍କର ମସ୍‌ଜିଦକୁ କେବଳ ନମାଜ ସମୟରେ ଯିବାକୁ ହୁଏ । ଅଗା ଖାଁ ସମ୍ପ୍ରଦାୟର ନମାଜ ସ୍ଥାନକୁ ମସ୍‌ଜିଦ କହନ୍ତି ନାହିଁ, ଜମାଯେତ୍‌ କହନ୍ତି । ତାଙ୍କର ଜମାଯେତର ଗଠନ ମସଜିଦପରି ନୁହେଁ—ଯେପରି ଗୋଟାଏ ବଡ଼ କୋଠା । ଶିହା ସମ୍ପ୍ରଦାୟ ପରିଚାଳନାଧୀନ ହିନ୍ଦ ମସଜି-ଦକୁ ମୁଁ ମୋର ସଙ୍ଗୀମାନଙ୍କୁ ନେଇ ଯାଇଥିଲି । କେତେଜଣ ଭାରତୀୟ ? ବୋହ୍ରା ଶ୍ରେଣୀର ବମ୍ବେରଲୋକ ସସ୍ତ୍ରୀକ ହଜ୍‌ କରି-ବାକୁ ଯାଇଥିଲେ । ସେମାନେ ମଧ୍ୟ କିଛିଦିନ ବିଶ୍ରାମ ନେବା ପାଇଁ ସେଠାରେ ରହିଥିଲେ । ମୋତେ ଦେଖି ସେମାନେ ବଡ଼ ଆନନ୍ଦିତ ହୋଇଥିଲେ ଆଉ ତାଙ୍କ ସଙ୍ଗରେ ରହିବାକୁ ମଧ୍ୟ ମୋତେ ଅନୁରୋଧ କରିଥିଲେ । ମୁଁ ରହିଲି ନାହିଁ ସତ, କିନ୍ତୁ ମଝିରେ ମଝିରେ ତାଙ୍କ ଠାକୁ ଯାଇ ଡ଼ାଲି, ଭାତ ଖାଇ ଆସୁ-ଥିଲି ।

ଦାମସ୍କସରୁ ପୀଚଢ଼ାଲା ଗୋଟିଏ ବଡ଼ କଳା ରାସ୍ତା ବେରୁତ ଆଡ଼କୁ ଚାଲି ଯାଇଛି । ରାସ୍ତାଟି ଦେଖିବାକୁ ଚାଲି ବାହାରିଛି ଏତିକି ବେଳେ ରାସ୍ତାର ଦକ୍ଷିଣ ଦିଗରେ ଗୋଟିଏ ବଙ୍ଗଳା ଢ଼ଙ୍ଗର ଘର ଦେଖି ତା'ର ସମ୍ମୁଖରେ ଯାଇ ଛିଡ଼ା ହେଲି । ଘରର ମାଲିକ ଜଣେ ଆରବ, ଧର୍ମରେ ଖ୍ରୀଷ୍ଟାନ୍‌ । ଖ୍ରୀଷ୍ଟାନ୍‌ ଧର୍ମ ଯେଉଁମାନେ ମାନି ଚଳନ୍ତି ସେମାନେ ପର୍ଦ୍ଦା ମାନନ୍ତି ନାହିଁ । ଘର ସମ୍ମୁଖରେ ଗୋଟିଏ ବଗିଚା । ବଗିଚାଟିର ସୌନ୍ଦର୍ଯ୍ୟ କେବଳ ମୋତେ ଟାଣି ରଖିଥିଲା । ମୁଁ ଯେତେ-ବେଳେ ବଗିଚା ଦେଖୁଥିଲି ସେତେବେଳେ ଘରଭିତରୁ ଜଣେ ମହିଳା ବାହାରି ଆସି ଫରାସୀ ଭାଷାରେ ମୋ'ର ପରିଚୟ ପଚାରିଲେ । ମୁଁ ଇଂରାଜିରେ ଉତ୍ତର ଦେବାରୁ ସେ ମଧ୍ୟ ମୋ ସହିତ ଇଂରାଜିରେ କଥାବାର୍ତ୍ତା କରିଥିଲେ । ମୋତେ ତାଙ୍କ ଘର ଭିତରକୁ ଡ଼ାକିନେଇ ବୈଠକଖାନାରେ ବସାଇଲେ । ଭାରତବର୍ଷ ସମ୍ବନ୍ଧରେ ଅନେକ କଥା ପଚାରିଲା ପରେ ମୋତେ









ପୁଣି ସନ୍ଧ୍ୟାବେଳକୁ ତାଙ୍କ ଘରକୁ ନିମନ୍ତ୍ରଣ କଲେ । ମୁଁ ସେଥିରେ ଅସମ୍ମତି ଜଣାଇଲି । ସେତେବେଳେ ବାଧହୋଇ ସେ ଅସ୍ଥିର ଅନେକ କଥାବାର୍ତ୍ତା ଆରମ୍ଭ କରିଦେଲେ । ମୁଁ ତାଙ୍କୁ ପଚାରିଲି ଏଇ ସହରରେ ଖ୍ରୀଷ୍ଟାନ୍‌ମାନଙ୍କ ସଂଖ୍ୟା ଖୁବ୍ କମ୍, ଆପଣମାନେ ପର୍ଦ୍ଦା ବ୍ୟବହାର ନ କରି ବାହାରକୁ କି ଭଳି ଯାଆନ୍ତି ? ମୋ କଥା ଶୁଣି ସେ ବଡ଼ ଆଶ୍ଚର୍ଯ୍ୟ ହେଲେ । କହିଲେ ଯିବୁ ନାହିଁ କାହିଁକି, ଏଥିରେ ତ କୌଣସି ଆପତ୍ତି ନାହିଁ କି ବାଟଘାଟରେ କେହି ଅପମାନ କରିବାର ଭୟ ନାହିଁ ! କଥା ନ ବଢ଼ାଇ ଭାବିବାକୁ ଲାଗିଲି, ଏହା ନିଶ୍ଚୟ ଦେଶ ଏବଂ ସ୍ଥାନର ମହାତ୍ମ୍ୟ । କେତେଜଣ ମାତ୍ର ଖ୍ରୀଷ୍ଟାନ ଆରବ, ତାଙ୍କର ପ୍ରଚଳିତ ପ୍ରଥା ମାନି ଚାଲୁଛନ୍ତି ଅଥଚ ତାଙ୍କ ପ୍ରତି କେହି କୌଣସି ପ୍ରକାର ଅନ୍ୟାୟ ବ୍ୟବହାର କରୁ ନାହାନ୍ତି ।

ଅନେକେ ଭାବନ୍ତି ଯଦି ସୁନ୍ନି ସମ୍ପ୍ରଦାୟ ଆରବ ଦେଶର କର୍ତ୍ତୃତ୍ୱ ନିଅନ୍ତି ତାହା ହେଲେ ଇହୁଦୀ, ଖ୍ରୀଷ୍ଟାନ ଏବଂ ଅନ୍ୟାନ୍ୟ ସମ୍ପ୍ରଦାୟ ତହିଁରେ ବାଧା ଦେବେ । କିନ୍ତୁ ଏ କଥାର କୌଣସି ଭିତ୍ତି ନାହିଁ । ଅନେକ ଇହୁଦୀଙ୍କ ସହିତ ମୁଁ କଥାବାର୍ତ୍ତା କରିଛି, ସେମାନେ ମଧ୍ୟ କହିଛନ୍ତି, ଧର୍ମ ଆଉ ରାଷ୍ଟ୍ର ସ୍ୱତନ୍ତ୍ର ପଦାର୍ଥ । ରାଷ୍ଟ୍ର ସମ୍ବନ୍ଧରେ ଯେତେବେଳେ କଥା ପଡ଼ିବ, ସେଇଠା ହେବ ସମଗ୍ର ଜାତିର କଥା, ଧର୍ମର କଥା ନୁହେ । ଆରବଗଣ ଧର୍ମ ଆଉ ଜାତୀୟ ଜୀବନକୁ କେବେ ହେଲେ ଏକତ୍ରିତ କରିବାକୁ ଚାହାନ୍ତି ନାହିଁ । ଭଦ୍ରମହିଳାଙ୍କ କଥାରୁ ବୁଝିଲି, ସେମାନେ ଆରବ ଦେଶର ସ୍ୱାଧୀନତା ଚାହାନ୍ତି, ଦେଶ ତାହାଦ୍ୱାରା ଶାସିତ ହେବ ସେ ପଛକଥା, କାରଣ ବର୍ତ୍ତମାନର ମାନବ ସମାଜ ପ୍ରଗତି ପଥରେ ଅନେକ ଆଗେଇ ଯାଇଛି, ଧର୍ମର ପାର୍ଥକ୍ୟ ଦ୍ୱାରା ତାହାର କୌଣସି କ୍ଷତି ହେବାର ସମ୍ଭାବନା ନାହିଁ ।




ଅରେ କାନାଡ଼ାସ୍ଥାନ ସିପାହୀଗଣ ଦାମସ୍କସକୁ ଆସି-ଥିଲେ ; ତାଙ୍କର ଅନ୍ତର ବ୍ୟବହାର ଖୁବ୍ ଭଲଥିଲା । କିନ୍ତୁ ସେମାନେ ଧର୍ମ ସମ୍ବନ୍ଧରେ ନାନା କଥା କହି ଲୋକଙ୍କୁ ଉତ୍ତ୍ୟକ୍ତ କରି ପକାଇଥିଲେ । ସେମାନେ ଚାଲିଗଲା ପରେ ଦାମସ୍କସର ଲୋକେ ଖୁବ୍ ଶାନ୍ତିରେ ଥିଲେ । ଫରାସୀ ସିପାହୀଗଣ ଧର୍ମ ସମ୍ବନ୍ଧରେ କୌଣସି ପ୍ରଶ୍ନ ଉଠାନ୍ତି ନାହିଁ, ସେମାନେ କେବଳ ମଉଜ ମଜଲିସ୍ କରି ସମସ୍ତ କଟାଇ ଦେବାକୁ ଚାହାନ୍ତି । ସ୍ଥାନୀୟ ଲୋକେ ଫରାସୀ ଶାସନରେ କେହି ଶାନ୍ତିରେ ନାହାନ୍ତି । ଫରାସୀ ଗଣଙ୍କର ଶୋଷଣ ନୀତି ଭୀଷଣ ମାରାତ୍ମକ । ସାଧାରଣ ଲୋକେ ଅବଲମ୍ବେ ସର୍ବସ୍ୱାନ୍ତ ହୋଇ ପଡ଼ନ୍ତି । ଫରାସୀଗଣ ରୋମାନ କାଥଲିକ୍ ; ଏହି ଭଦ୍ରମହିଳା ମଧ୍ୟ ନିଷ୍ଠାପର ରୋମାନ କାଥଲିକ୍ କିନ୍ତୁ ଫରାସୀମାନଙ୍କ ପ୍ରତି ତାଙ୍କର ଟିକିଏ ହେଲେ ସହାନୁଭୂତି ନାହିଁ । ଅନ୍ନକଷ୍ଟ ଯେଉଁଠାରେ ପ୍ରବଳ, ଧର୍ମର ବନ୍ଧନ ସେଠାରେ ତିଷ୍ଠି ପାରିବ ନାହିଁ । ସବୁଠାରେ କିନ୍ତୁ ଏ କଥା ଚଳିବ ନାହିଁ । ଯାହାଙ୍କ ଭିତରେ ସାଧାରଣ ଶିକ୍ଷା ରହିଛି, ଜାତୀୟ ଭାବ ଜାଗି ଉଠିଛି, ସେମାନଙ୍କ ପକ୍ଷରେ କେବଳ ଏ ନିୟମ ଚଳିବ । ଯେଉଁଠାରେ ବର୍ତ୍ତମାନ ସୁଦ୍ଧା ସାଧାରଣ ଲୋକେ ଭଗବାନଙ୍କ ଉପରେ ସମସ୍ତ ଦୋଷ ଲଦି-ଦେଇ ନିରୀହ ଛେଳିପରି କଂସାଇ ଘରକୁ ଯାଇ ମରନ୍ତି, ସେମା-ନଙ୍କ ପାଇଁ ଏହି ନିୟମ ଏକାବେଳେକେ ଅଚଳ ।

ଦୁଇ ପହରେ ମହିଳାଙ୍କ ଘରରୁ ବାହାର ହୋଇ ହୋଟେ-ଲକୁ ଫେରି ଆସିଲା ବେଳେ ଜଣେ ସିନ୍ଧ ରେଶମ ବ୍ୟବସାୟୀଙ୍କ ସହ ସାକ୍ଷାତ ହେଲା । ସେ ମୋତେ ତାଙ୍କ ଦୋକାନକୁ ଡାକି ନେଇଗଲେ । ଦୋକାନଟି ଛୋଟ, ଦିନବେଳେ ମଧ୍ୟ ଦୋକାନ ଭିତରେ ଅନେକ ଗୁଡ଼ିଏ ବିଜୁଳି ଆଲୁଅ ଜଳୁଥିଲା । ଦୋକାନ ଭିତରକୁ ଯାଇ ଦେଖିଲି ଅନେକ ହେତା ରେସମ

କିଣିବାରେ ଲାଗି ପଡ଼ିଛନ୍ତି । ସେମାନଙ୍କ ମଧ୍ୟରୁ ଆରବଙ୍କ ସଂଖ୍ୟା ବେଶୀ । ସ୍ତ୍ରୀଲୋକ ମଧ୍ୟ ଅଛନ୍ତି । ଆରବ ମହିଳାଗଣ ବୋରଖା ପିନ୍ଧି ବଜାରକୁ ଯିବା ଆସିବା କରି ପାରନ୍ତି । ବିକା କିଣା କରିବାରେ କୌଣସି ନ୍ୟାୟ୍ୟ ସଙ୍ଗତ କଥା କହିବାକୁ ସେମାନଙ୍କୁ କେହି ବାଧା ଦିଅନ୍ତି ନାହିଁ । ତାଙ୍କ ସଙ୍ଗରେ ପରିବାରର କୌଣସି ଲୋକ ମଧ୍ୟ ରହନ୍ତି ନାହିଁ । ମୁଁ ଭାବିଲି, ଏମାନେ କେବଳ ବୋରଖା ସିନା ପିନ୍ଧନ୍ତି, କିନ୍ତୁ ଏମାନେ ଆମ ଦେଶରେ ସ୍ତ୍ରୀମାନଙ୍କ ଅପେକ୍ଷା ଅନେକ ଗୁଣରେ ସ୍ୱାଧୀନ ।

ଆମେ ଦୋକାନରେ ନବସି ଦୋକାନ ଭିତର ପ୍ରାଇଭେଟ ଚେମ୍ବାରରେ ବସି କଥାବାର୍ତ୍ତା କଲୁ । ଦୋକାନୀଟି ପୁରୁଣା ଯୁଗର ମତବାଦୀ । ତାଙ୍କର ଅନ୍ୟାନ୍ୟ କର୍ମଚାରୀ ଗଣ କିନ୍ତୁ ନୂତନତ୍ୱର ପୂଜାରୀ ! ଏହି ସଂପର୍କରେ ସେ ଅନେକ କଥା ଆରମ୍ଭ କଲେ । ପ୍ରଥମେ ସେ ସିରିଆ ଅଧିବାସୀଙ୍କର ସ୍ୱାଧୀନତା ସଂଗ୍ରାମକୁ ପ୍ରଶଂସା କଲେ, ପଛରେ ପୁଣି ସେମାନେ ଇଉରୋପୀୟଙ୍କ ବେଶ ଭୂଷାର ଅନୁକରଣ କରୁଛନ୍ତି ବୋଲି ନିନ୍ଦା କଲେ । ମୁଁ ତାଙ୍କ କଥାର କୌଣସି ପ୍ରତିବାଦ ନକରି କେବଳ ନୀରବରେ ଶୁଣି ଯାଉଥିଲି । ତାଙ୍କର ପୁଅ କିନ୍ତୁ ପ୍ରତିବାଦ ନକରି ଛାଡ଼ୁ ନଥିଲା । ଆହୁରି ମଧ୍ୟ ଲକ୍ଷକରି ଦେଖିଲି ଦୋକାନୀ ଭଦ୍ରଲୋକ କେବଳ ଦୁ'ଚାରି କଥା ହୋଇ ମୋତେ ଛାଡ଼ି ଦେବାକୁ ବସିଥିଲେ, କିନ୍ତୁ ପିଲାଦଳ ମୋତେ ଅଟକାଇ ରଖିଲେ ଆଜି ଘରକୁ ଖାଇବା ପାଇଁ ଡାକିଲେ । ବୃଦ୍ଧ ଭଦ୍ରଲୋକ ମହା ବିପଦରେ ପଡ଼ିଲେ । ଏଭଳି ମହଙ୍ଗା ସ୍ଥାନରେ ଗୋଟାଏ ଲୋକ ବିନା କାରଣରେ ଖାଇଯିବ, ଏହି କ୍ଷତି କିଏ ସହିବ । ଏହା ଭାବି ସେ ମୁଣ୍ଡରେ ହାତ ଦେଇଥିଲେ । ପିଲାମାନେ ମୋତେ ଖୁବ୍ ଆଦର ଯତ୍ନକରି ଯଥେଷ୍ଟ ଖୁଆଇଲେ, ପୁଣି ବିଦାୟ ବେଳରେ ଦେଢ଼ଶହ ଫ୍ରାଙ୍କ୍ ମୋ ପକେଟରେ

ଗୁଞ୍ଜି ଦେଲେ । ବୁଢ଼ା ଆଉ ସହି ନପାରି ମୋତେ ତାଙ୍କ ଘର ଛାଡ଼ି ବାହାରି ଯିବାକୁ କହିଲା । ମୁଁ ମଧ୍ୟ ଆଉ ସେଠାରେ ଛିଡ଼ା ନ ହୋଇ ହୋଟେଲକୁ ଫେରି ଆସି ଭାବିଲି, ଏତେ ଟଙ୍କା ପାଇ ମଧ୍ୟ ବୁଢ଼ାର ଧନପିପାସା ମେଣ୍ଟୁ ନାହିଁ । ସତରେ କଣ ଧନ ପିପାସାର ଅନ୍ତ ନାହିଁ ।

ସେଦିନ ସନ୍ଧ୍ୟାବେଳେ ପୁଣି କାଫେ ଖାନାରେ ଯାଇ ବସିଲି । ଆରବ ଦେଶର କାଫେଖାନା ଗୁଡ଼ିକ ପ୍ରସିଦ୍ଧ । ଯେତେବେଳେ କାହାର କୌଣସି କାମ ନଥାଏ, ସେତେବେଳେ ସେମାନେ କାଫେ ଖାନାରେ ଯାଇ ବସନ୍ତି । କାଫେଖାନା ଗୁଡ଼ିକରେ ବସିବାର ସୁବନ୍ଦୋବସ୍ତ ରହିଛି । ଅନେକ କାଫେରେ ଆରାମ ଚେୟାର ମଧ୍ୟ ରହିଛି । ଆରବର ଅନେକ ଦୋଷଗୁଣ ଆମେ ପାଇଛୁ । ମୋର କିନ୍ତୁ ମନେହୁଏ, ଆମ ଦେଶର ହୋଟେଲ ଗୁଡ଼ିକ ମଧ୍ୟ ଆରବ ପ୍ରଥାରେ ଗଢ଼ି ଉଠିଛି । କିନ୍ତୁ ଆରବ ହୋଟେଲର ଦୋକାନ ସମ୍ମୁଖରେ ରୋଷେଇର ବ୍ୟବସ୍ଥା ନାହିଁ । ସେମାନେ ଭିତରେ ରାନ୍ଧନ୍ତି ଆଉ ବାହାରେ ଖାଆନ୍ତି । ଆମ ଦେଶରେ ରନ୍ଧାହୁଏ ଦ୍ୱାର ପାଖରେ ଆଉ ଭିତରେ ବସି ଖାଆନ୍ତି । ଏଇଠାରେ ଆରବୀ ପ୍ରଥା ସହିତ ଆମର ଅମେଳ । କିନ୍ତୁ ଆରବର ଛୋଟ ଛୋଟ ଦୋକାନ ଗୁଡ଼ିକରେ ଆମ ଦେଶର ମିଠାଇ ଦୋକାନ ପରି ଦ୍ୱାର ପାଖରେ ରନ୍ଧାରନ୍ଧି ହୁଏ । ଏହିଭଳି ଦୋକାନକୁ କୌଣସି ଶିକ୍ଷିତ ଆରବ ଯାଆନ୍ତି ନାହିଁ ।

ସେଦିନ ମୁଁ ଉଚ୍ଚ ଶ୍ରେଣୀର ଆରବ କାଫେକୁ ନ ଯାଇ ଗୋଟିଏ ନିମ୍ନ ସ୍ତରର ଜଳଖିଆ ଦୋକାନରେ ଯାଇ ବସିଲି । କେତେ ଗୁଡ଼ିଏ ଅପରିଷ୍କାର ବାଳକ ବାଳିକା ତେଲରେ ଭଜା ମାଛଭଜା କିଣିବା ପାଇଁ ଭିଡ଼ ଲଗାଉ ଥିଲେ । ସେମାନେ ପ୍ରତ୍ୟେକ ମାଛଭଜା କିଣି ସଙ୍ଗେ ସଙ୍ଗେ ଖାଇ ପକାଉ ଥିଲେ ।



ଆରବ ଦେଶରେ ପତ୍ରର ଅଭାବ, ସେଥିପାଇଁ ସମସ୍ତେ ହାତରେ ମାଛଭଜା ନେଉଥିଲେ । ମୁଁ ମଧ୍ୟ ହାତ ପାତି ଛିଡ଼ା ହେଲି । ଦୋକାନୀ ମୋ ଆଡ଼କୁ କେତେଥର ଚାହିଁ ଦୁଇଖଣ୍ଡ ମାଛଭଜା ମୋ ହାତରେ ଦେଲା । ତାକୁ ତାର ଦାମ ସ୍ୱରୂପ କୋଡ଼ିଏ ସେଣ୍ଟିମ ଦେଇ ମାଛଭଜା ଖାଇବାକୁ ଲାଗିଲି । ମାଛଭଜା ଗୁଡ଼ିକ ମନ୍ଦ ହୋଇ ନଥିଲା, ତେବେ ବେଶୀ ଲୁଣ ପଡ଼ିଥିବାରୁ ମୁଁ ସବୁଯାକ ଖାଇ ପାରି ନଥିଲି । ଇଉରୋପୀୟ ପୋଷାକ ପରିହିତ ଜଣେ ଲୋକକୁ ମାଛଭଜା ଖାଇବାର ଦେଖି ପାଖ-ଅଖ ଦୋକାନରୁ ଲୋକ ଆସି ଭିଡ଼ କଲେ । ଆମ ଦେଶର ଲୋକେ କୌଣସି ବିଦେଶୀ ଭାଷା ଶିଖିବାକୁ ଆରମ୍ଭ କଲା ମାତ୍ରକେ ସେମାନେ ସର୍ବ ପ୍ରଥମ ବ୍ୟାକରଣ ଶିଖନ୍ତି । କିନ୍ତୁ ଆରବଗଣ ତାହା କରନ୍ତି ନାହିଁ । ସେମାନେ ଶବ୍ଦର ଅର୍ଥ କେବଳ ଶିଖନ୍ତି ଆଉ ସେହି ଶବ୍ଦ ବ୍ୟବହାର କରନ୍ତି । ସେମାନେ ବ୍ୟାକରଣ ଆଡ଼କୁ ଫେରି ଚାହାନ୍ତି ନାହିଁ । ଆରବ ଦେଶରେ କିନ୍ତୁ ଏ ନିୟମ ଥିଲାନାହିଁ । ସେମାନେ ମଧ୍ୟ ପ୍ରଥମେ ବ୍ୟାକରଣ ଶିଖୁଥିଲେ । କିନ୍ତୁ ଦରକାର ଅନୁଭବରେ ପୁରୁଣା ନିୟମ ଛାଡ଼ିବାକୁ ବାଧ୍ୟ ହୋଇଛନ୍ତି ।

ଲୋକ ଭିଡ଼ରେ ରହିବାକୁ ମୋତେ ଆଦୌ ଭଲ ଲାଗେ ନାହିଁ । ତେଣୁ ହାତଟା ରୁମାଲରେ ପୋଛିଦେଇ ଆଗକୁ ଚାଲିଲି । କିନ୍ତୁ ଏ ସ୍ଥାନର ଲୋକେ ବଡ଼ କୌତୁହଳୀ । ଜଣେ ଦୁଇଜଣ ମୋ ପଛେ ପଛେ ଚାଲିଲେ । ସେମାନେ ମୋ ପାଖକୁ ଆସି କେତେକଣ କହିଲେ । ମୁଁ କିଛି ବୁଝି ପାରିଲି ନାହିଁ । ମୁଁ ତାଙ୍କୁ କେବଳ କହିଲି "ଛଇୟା ଦୁନିଆ" ଅର୍ଥାତ୍ ଭୂପର୍ଯ୍ୟଟକ ।

ସେତେବେଳେ ଜର୍ମାନଗଣ କେବଳ ଦେଶବିଦେଶ ପଦବ୍ରଜରେ, ନୌକାରେ, ସାଇକେଲରେ ବୁଲୁଥିଲେ ।




ସେମାନେ ମୋତେ ଜର୍ମାନ ତ ଆଦୌ ଭାବି ନାହାନ୍ତି ବରଂ ଦକ୍ଷିଣ ଦେଶର ଆରବ ବୋଲି ଭାବିଥିଲେ, କିନ୍ତୁ ଗୋଟିଏ ହେଲେ ଆରବୀ କଥା କହି ନ ପାରିବାରୁ ସେମାନେ ସମସ୍ତେ ମୋ ମୁହଁ ଆଡ଼କୁ ଚାହିଁ ରହିଲେ । ତାଙ୍କ ପାଖରୁ ରକ୍ଷାପାଇ ଆଉ କେଉଁଠି ମାଛ ଭଜା ଖାଇବାକୁ ଛିଡ଼ା ହେଲି ନାହିଁ, ଗୋଟିଏ ବଡ଼ କାଫେକୁ ଯାଇ ଆରାମ ଚେୟାରଟିଏ ଟାଣି ଟିକିଏ ଶାନ୍ତିରେ ବସିଲି । ଏଠାରେ କଫି କିମ୍ବା ଅନ୍ୟ ଖାଦ୍ୟ ପଦାର୍ଥର ଦାମ ଆସନ ଅନୁଯାୟୀ । ମୁଁ ଭଲ ଆସନରେ ବସିଥିବା ଯୋଗୁ ପ୍ରତ୍ୟେକ ଜିନିଷର ଦାମ ତିନିଗୁଣରୁ ବେଶି ଦେବାକୁ ବାଧ ହୋଇଥିଲି । ମୋ'ର ସ୍ୱଚ୍ଛଳତା ଦେଖି ମୋ ପାଖରେ ବସିଥିବା ଜଣେ ଦୁଇଜଣ ବ୍ୟବସାୟୀ ମୋ ସହିତ କଥାବାର୍ତ୍ତା ଆରମ୍ଭ କଲେ । ଏହି ସବୁ କାଫେରେ ଭାଷାର କୌଣସି ଅଭାବ ନାହିଁ । ଆରବଗଣ ସୁଯୋଗ ପାଇଲେ ଅତି ଅଳ୍ପ ସମୟ ମଧ୍ୟରେ ବିଦେଶୀ ଭାଷା ଆୟତ୍ତ କରି ପକାନ୍ତି ।

କାଫେରୁ ବାହାରି ସହରର କେତୋଟି ବିଶିଷ୍ଟ ରାସ୍ତା ବୁଲି ଦେଖିଲାବେଳେ ଗୋଟିଏ ଘଟଣା ଦେଖି ଛିଡ଼ା ହେଲି । ଜଣେ ଆରବ ଭୁଲକରି ଗୋଟାଏ ରାସ୍ତାରେ ଚାଲି ଆସିଥିଲା—ସେ ରାସ୍ତାରେ ଓଟରେ ଯିବା ଆସିବା ନିଷେଧ । ଦାମସ୍କସ ସହରରେ ଗୃହପାଳିତ ପଶୁ ରଖିବାକୁ ଦିଆ ହୁଏ ନାହିଁ । ଓଟ ମଧ୍ୟ ସହରର ସବୁ ଅଞ୍ଚଳକୁ ଆସିପାରେ ନାହିଁ । ସହରର ଆଇନ ସମ୍ବନ୍ଧରେ ଅନଭିଜ୍ଞ ଲୋକଟି ଯେତେବେଳେ ଓଟ ପିଠିରେ ବସି ନିଷିଦ୍ଧ ରାସ୍ତା ଉପରେ ଯାଉଥିଲା, ସେତେବେଳେ କେତେକ ଲୋକ ତାକୁ ଅଟକାଇ ଫେରିଯିବାକୁ କହିଲେ । ଲୋକଟି ଫେରିଯିବାକୁ ରାଜି ହେଲା କିନ୍ତୁ ଓଟ ନିଷିଦ୍ଧ ପଥ ଛାଡ଼ିବାକୁ ନାରାଜ । ଓଟକୁ ଫେରାଇବା ଏକ କଷ୍ଟକର ବ୍ୟାପାର ହୋଇ ପଡ଼ିଲା । ଅତି କଷ୍ଟରେ ସମସ୍ତଙ୍କ ଚେଷ୍ଟା ଫଳରେ ଯାଇ

ଉଠି ବିପରୀତ ଦିଗରେ ଚାଲିଲା । କିନ୍ତୁ ଉଠର ମାଲିକ ତାହାଂକୁ କହି ଜଣାଇ ଦେଲା ଯେ ସେହି ଦିଗରୁ ଝଡ଼ ଆସୁଛି । ସମସ୍ତେ ସାବଧାନ ହୋଇ ରୁହ । ସେହି ସୁନ୍ଦର ରାତରେ ଯେ ଝଡ଼ ହେବ ତାହା ଆମେ କଳ୍ପନା ମଧ୍ୟ କରି ନ ଥିଲୁ, କିନ୍ତୁ ଦେଖୁ ଦେଖୁ ଅଧଘଣ୍ଟା ଭିତରେ ପ୍ରବଳ ଘୂର୍ଣ୍ଣିବାତ୍ୟା ଛୁଟି ଆସିଲା । ମରୁଭୂମିର ବାଲିର ଝଡ଼ ଉଠି ଆକାଶ ଅନ୍ଧକାର କରି ପକାଇଲା । ଏହିପରି ଝଡ଼ର ଅଭିଜ୍ଞତା ମୋ'ର ଆଗରୁ ଥିଲା, ସେଥିପାଇଁ ଯଥା ସମୟରେ ମୁଁ ମୋ'ର ହୋଟେଲରେ ପହଞ୍ଚି ଯାଇଥିଲି ।

ପରଦିନ ସକାଳେ ଇମିଗ୍ରେସନ ଅଫିସକୁ ଯାଇ ସମସ୍ତ ପରିଚିତ ବ୍ୟକ୍ତିଙ୍କ ଠାରୁ ବିଦାୟ ନେଇ ଆସିଲି । ସକାଳଓଳି ଗରମ ଥିଲା ନାହିଁ ସୁତରାଂ ଟିକିଏ ଶାନ୍ତିରେ ସହର ଭିତରେ ବୁଲାବୁଲି କଲି । ବଡ଼ ଚୌକ ପାଖରେ ଜଣେ କଙ୍କଣୀ ମୁସଲମାନ ସଙ୍ଗେ ଦେଖା ହେଲା । ସେ ବୋମ୍ବେର ଅଧିବାସୀ, ଭାଷା ତାର କଙ୍କଣୀ, ସୁତରାଂ ମୁଁ ଏଣିକି ତାକୁ କଙ୍କଣୀ ବୋଲି ଡାକିବି ।

କଙ୍କଣୀ ନାବିକ ଅନେକ ଦେଶ ଭ୍ରମଣ କରିଛି । ତା'ର ଇଚ୍ଛା ହେଲା ମୁସଲମାନ ମାନଙ୍କର ଧର୍ମ ସ୍ଥାନ ଗୁଡ଼ିକ ଦେଖିବ । ସେଇ ସବୁ ସ୍ଥାନ ବୁଲାବୁଲି କରି ଦାମସ୍କସରେ ଆସି ପହଞ୍ଚିଛି । ଏଠାକୁ ଆସିବା ଆଗରୁ ତା'ର ମନରେ ଜାତୀୟ ଭାବର ବୀଜ ବପନ ହୋଇଥିଲା । ବେରୁତକୁ ଆସି ସ୍ଥାନୀୟ ଜାତୀୟତାବାଦୀଙ୍କ ସଙ୍ଗରେ କଙ୍କଣୀ ଖୁବ୍ ଘନିଷ୍ଠ ଭାବରେ ମିଶି ପାରିଥିଲା, କଙ୍କଣୀର ବିଦ୍ୟାବୁଦ୍ଧି କମ୍ ଥିଲେ ମଧ୍ୟ ସେ ଭଲଭାବରେ ବୁଝିପାରିଥିଲା ଯେ—ଧର୍ମ କେବଳ ଯଥା ସର୍ବସ୍ୱ ନୁହେ । ପୃଥିବୀରେ ବଞ୍ଚି ରହିବାକୁ ହେଲେ ମାନସମ୍ମାନର ମଧ୍ୟ ଦରକାର ଅଛି । ମାନସମ୍ମାନ ବଜାୟ ରଖିବାକୁ ହେଲେ ଜାତୀୟ ସ୍ୱାଧୀ-

ନତା ଏକମାତ୍ର ଦରକାର, ତାହାର ଅଭାବରେ ମାନସମ୍ମାନର କୌଣସି ମୂଲ୍ୟ ନାହିଁ ।

ମୋ ସହିତ କଙ୍କଣୀର ଦେଖା ହେଲା ପରେ ଉଭୟେ ଦୁ'ଜଣ ମିଶି ହୋଟେଲକୁ ଆସିଲୁ ଏବଂ କେତେ ଦେଶ ବିଦେଶର କଥାବାର୍ତ୍ତା ହେଲୁ । ମୋ'ର ଭ୍ରମଣ କାହାଣୀ ଶୁଣି କଙ୍କଣୀ ମୋ'ର ସଙ୍ଗୀ ହେବ ବୋଲି କହିଲା । କିନ୍ତୁ ତା'ର ପାଶପୋର୍ଟ ନ ଥିବାରୁ ସେ ମୋ'ର ସଙ୍ଗୀ ହୋଇ ପାରିଲା ନାହିଁ । କିନ୍ତୁ ତା'ଙ୍କ ସାଙ୍ଗରେ ଏହି ପରାମର୍ଶ ହେଲା ଯେ ମୁଁ ଯେତେଦିନ ସିରିଆରେ ରହିବି ସାଥୀ ହୋଇ ରହିବାକୁ ଚେଷ୍ଟା କରିବ ।

ମୁଁ ଏଥର ବେରୁତ ଯିବି । ତେଣୁ ତାକୁ ବେରୁତର ବାସ୍‌ରେ ବସାଇ ଦେବାକୁ ଚେଷ୍ଟା କରିବାକୁ ଲାଗିଗଲି । ଅନେକ ପରିଶ୍ରମ ପରେ ଓପରଓଳା ବାସରେ ତାଙ୍କୁ ବସାଇ ଦେଲି । ଆଗରୁ ଶୁଣିଥିଲି, ବେରୁତରେ ଜଣେ ମୁସଲିମ ହିନ୍ଦୁ ଅଛନ୍ତି, ତାଙ୍କର ଗୋଟାଏ ମସଜିଦ୍ ମଧ୍ୟ ଅଛି । କଙ୍କଣୀ ସାଙ୍ଗରେ ମୋର ଏହି ସର୍ତ୍ତ ରହିଲା ଯେ ଆମେ ଦୁହେଁ ସେହି ମସଜିଦରେ ନଚେତ୍ ସେହି ମୁସଲିମ୍ ହିନ୍ଦୁଙ୍କ ଘରେ ମିଳିବୁ । କଙ୍କଣୀ ସନ୍ଧ୍ୟାର ବାସରେ ବେରୁତ ଅଡ଼କୁ ଚାଲିଲେ । ବାସ ଥିବା ଯାକେ ମୁଁ ବାସ୍‌ଷ୍ଟେଣ୍ଡରେ ତାଙ୍କୁ ବିଦାୟ ଦେବା ପାଇଁ ରହିଥିଲି ।

ବେରୁତ ସହରଟା କାହିଁକି ଆଉ ଦାମସ୍କସରୁ କେତେଦୂର ହେବ ମୋର କୌଣସି ଧାରଣା ଥିଲା ନାହିଁ । ଦାମସ୍କସରୁ ବେରୁତ ଅଡ଼କୁ ରାସ୍ତାଟା କ୍ରମଶଃ ଉଠାଣିଆ ହୋଇ ଯାଇଛି । ସେଥି ପାଇଁ ବାଟ ଚାଲିବାକୁ ଖୁବ୍ ଡେରି ହେଲା । ମରୁଭୂମି ବର୍ତ୍ତମାନ ମଧ୍ୟ ଶେଷ ହୋଇ ନାହିଁ । ପାହାଡ଼ ଗୁଡ଼ିକରେ ବର୍ତ୍ତମାନ ମଧ୍ୟ ଗଛପତ୍ର ଦେଖା ଯାଉ ନଥିଲା । ମନେ ହେଉ-



ଥିଲି ମୁଁ ଯେପରି ମରୁଭୂମି ଭିତରେ ଚାଲିଛି । ଉପର ଅଡ଼ୁ ଅର୍ଥାତ୍ ବେରୁତ ଦିଗରୁ ଜଣେ ଓଟ ସବାର ଆସୁଥିଲା । ତାର ହାତରେ ଗୋଟିଏ ଲମ୍ବା ଦଉଡ଼ିରେ ଜଣେ ଦାଡ଼ୁଜସ ( Druses ) ବନ୍ଧା ହୋଇଥିଲା । ଲୋକଟିର ଚେହେରା ଦେଖିବାକୁ ଠିକ୍ ବେଦୁଇନ ପରି, କିନ୍ତୁ ତାର ପ୍ରକୃତ ମୋର ଅଜଣା ଥିଲା । ଶୁଣିଥିଲି ଦାଡ଼ୁଜସ୍‌ଗଣ ପର୍ବତରେ ବାସ କରନ୍ତି ଆଉ ଯେତେବେଳେ ସୁଦ୍ଧା ସେମାନେ ଅସଭ୍ୟଥିଲେ । କିନ୍ତୁ ଲୋକଟାକୁ ଯେଉଁଭଳି ଭାବରେ ଓଟ ପଛରେ ଟାଣି ନିଆଯାଉ ଥିଲା ତହିଁରେ ସଭ୍ୟତାର କେଉଁ ଲକ୍ଷଣ ପ୍ରକାଶ ପାଉଥିଲା ବୁଝି ପାରିଲି ନାହିଁ । କଂସାଇ ଖାନାରେ ଜୀବଜନ୍ତୁ ହଣା ହୁଅନ୍ତି, କାରା ପ୍ରାଚୀରର ଅନ୍ତରାଳରେ ମଧ୍ୟ ଅନେକ ଦେଶ ପ୍ରେମିକ ଉପରେ ନିର୍ମମ ଅତ୍ୟାଚାର କରାଯାଏ, କିନ୍ତୁ ସେହି ସବୁ ବ୍ୟାପାର ଲୋକ ଚକ୍ଷୁର ଅନ୍ତରାଳରେ ହୋଇଥାଏ । ସର୍ବ ସାଧାରଣଙ୍କ ରାସ୍ତା ଉପରେ ଦିନ ଦିପହରେ ଗୋଟାଏ ଲୋକକୁ ପଶୁ ପଛରେ ବାନ୍ଧି ଟାଣି ନେବାରେ କେଉଁ ସଭ୍ୟତାର ଅହଂକାର ଭରି ରହିଛି ଭାବି ମୋ ମୁଣ୍ଡଟା ବିଗିଡ଼ି ଉଠିଲା । ଲୋକଟିର ମୁହଁରୁ ଫେଣ ବାହାରି ପଡ଼ୁଥିଲା, ଚାଲିଲା ବେଳକୁ ପାଦ ତାର ଟଳ ମଳ ହେଉଥିଲା, ତେବେ ସୁଦ୍ଧା ଲୋକଟାକୁ ଭିଡ଼ି ନେଇ ଓଟ ସବାର ସଦର୍ପରେ ଚାଲି ଯାଉଥିଲା । ମୁଁ ଅନେକ ବେଳଯାଏ ଛିଡ଼ା ହୋଇ ସେ ମର୍ମନ୍ତୁଦ ଦୃଶ୍ୟ ଦେଖି ମୁହଁ ବୁଲାଇ ବାକୁ ବାଧ୍ୟ ହେଲି । ପୁଣି ଆଗକୁ ଚାଲୁ ଚାଲୁ ଭାବୁଥିଲି କେଉଁ ଦୋଷରୁ ଆରବଗଣ ଏତେ ହୀନବୀର୍ଯ୍ୟ ହୋଇ ପଡ଼ିଛନ୍ତି ।

ସକାଳ ପନ୍ଦରକ ସାଇକେଲ ଚଳାଇ ଦିପହର ବେଳକୁ ଗୋଟାଏ ତମ୍ବୁ ପାଖରେ ପହଞ୍ଚି ଛିଡ଼ାହେଲି । ଅନେକ ଦିନ ହେଲା ନମସ୍କାର ଶବ୍ଦଟା ବ୍ୟବହାର କରି ନ ଥିଲି, କାରଣ

ଏବେ ଅଉ ମୋତେ ପରିଚୟ ଦେବାକୁ କଷ୍ଟ ହୁଏ ନାହିଁ । ଏ ଅଞ୍ଚଳର ଗୋଟିଏ ଶ୍ରେଣୀର, ଲୋକଙ୍କ ପାଖରେ ହିନ୍ଦ ଅର୍ଥାତ୍ ଭାରତବାସୀଙ୍କର ଯଥେଷ୍ଟ ସମ୍ମାନ ଅଛି । ସେମାନେ ଭାବନ୍ତି ଭାରତବର୍ଷ ପରୀର ଦେଶ । ଭାରତବର୍ଷର ନଦୀର ପାଣି ଖଜୁର ରସ ପରି ସୁସ୍ୱାଦୁ, ବାଟ ଘାଟରେ ସୁନାର ତାଳ-ଗଛ ଲାଗିଛି । ହିନ୍ଦଗଣ ଠଙ୍କା କଉଡ଼ି ପରିବର୍ତ୍ତିରେ ମଣିମାଣିକ୍ୟ ବ୍ୟବହାର କରନ୍ତି ।

ତମ୍ବୁ ପାଖରେ ପହଞ୍ଚୁ ପହଞ୍ଚୁ ମୋ ମୁହଁରୁ ନମସ୍କାର ଶବ୍ଦଟା ବାହାରି ପଡ଼ିଲା । ସୁଖର କଥା କେହି ଶୁଣି ନାହାନ୍ତି । ତମ୍ବୁଟି ଖୁବ୍ ଛୋଟ । ତମ୍ବୁର ଚାରିପାଖରେ କୌଣସି ଆବରଣ ଥିଲା ନାହିଁ । ତାକୁ ତମ୍ବୁ ନ କହି ଗୋଟାଏ ପୁରୁଣା ମୋଟା ମଇଳା ଚାଦରକୁ ଚାରୋଟି ଖୁଣ୍ଟି ଉପରେ ବାନ୍ଧି ଦିଆ ହୋଇଛି କହିଲେ ବୁଝିବାକୁ ସହଜ ହେବ । ତା'ର ତଳରେ ବସି ଜଣେ ଆରବ ଅର୍ଦ୍ଧମୁଦ୍ରିତ ନୟନରେ ଦୂରଦିଗ ଆଡ଼କୁ ମୁହଁ କରି ବସିଥିଲେ, ତାଙ୍କ ପଛ ପାଖରେ ଗୋଟିଏ ଛୋଟ ଝିଅ ତାଙ୍କର ବେକର ସୂତାରେ କେତୋଟି ଗଣ୍ଠିଅଛି ଗଣୁଥିଲା ଆଉ ବେଳେ ବେଳେ ସେହି ଗଣ୍ଠି ଗୁଡ଼ିକୁ କାମୁଡ଼ି ପକାଉଥିଲା । ମୋତେ ଦେଖି ଝିଅଟି ତା'ବାପର ବେକରେ ଅଉଜି ପଡ଼ିଲା । ବାପ ତା'ର ମୋ ଆଡ଼କୁ ଚାହିଁଲେ । ମୁଁ ତାଙ୍କୁ ନମସ୍କାର କଲି, ସେ ମୋତେ ପାଖକୁ ଡାକି ବସାଇଲେ । ମୁଁ ପାଖରେ ବସି ଗୋଟାଏ ସିଗାରେଟ ତାଙ୍କ ହାତକୁ ଦେଲି । ଆରବ ଚକମକି ପଥର ଘସି ନିଆଁ ବାହାର କଲେ । ମୁଁ ମନେ ମନେ ଭାବିଲି ଆଜି ରାତିଟା ଏଇଠାରେ କଟାଇ ଦେବି ବୋଲି ଦୁହେଁ ମିଶି ଦୁଇଟି ସିଗାରେଟ ଟାଣି ସାରିଲୁ ପରେ ମୁଁ ମୋ'ର ଖଦଡ଼ ଚଦର ଖଣ୍ଡିକ କେତୋଟି ପଥର ଘୁଞ୍ଚାଇ ଦେଇ ବିଛାଇ ପକା-ଇଲି । ସ୍ଥାନ ନିର୍ବାଚନର ଜ୍ଞାନ ମୋ'ର ଅଛି ଦେଖି ଆରବ ବଡ଼ ଆନନ୍ଦିତ ହେଲେ ।



ଅନେକଙ୍କର ଧାରଣା, ମରୁଭୂମିରେ ହିଂସ୍ରଜୀବ ନାହିଁ, କିନ୍ତୁ ଉତପ୍ତ ବାଲିକଣା ଭିତରେ ମଧ୍ୟ ନାନାପ୍ରକାର ଜୀବର ଜନ୍ମ ମୃତ୍ୟୁ ହେଉଅଛି । ଏହି ସବୁ ଜୀବର ଜନ୍ମମୃତ୍ୟୁର ସମ୍ବାଦ ମରୁବାସୀଗଣ କେବଳ ଜାଣନ୍ତି । ଆମଭଳି ସାଧାରଣ ଲୋକ ସେ ସମ୍ବାଦ ରଖିବାକୁ ସକ୍ଷମ ନୁହନ୍ତି । ଆମେ କେବଳ ମରୁ-ଭୂମିର ଆକାଶ, ବତାସ ଆଉ ଧୂସରବର୍ଣ୍ଣର ସୂର୍ଯ୍ୟଙ୍କ କଥା ଭାବି ପାରିବୁ । ମରୁଭୂମିରେ ପଥରର ଆକୃତି ବିଶିଷ୍ଟ ସାନବଡ଼ ଅନେକ ପୋକ ହୁଅନ୍ତି । ଏହି ପୋକମାନଙ୍କୁ ଦେଖିଲେ ଗୋଟାଏ ପଥରଖଣ୍ଡ ପଡ଼ିଛି ବୋଲି ଧାରଣା ହୁଏ । କିନ୍ତୁ ତାକୁ ଉଠାଇ ଦେଖିଲେ ଜଣାପଡ଼େ ଯେ ଗୋଟିଏ ବିଷାକ୍ତ ଜୀବ ଖାଦ୍ୟ ପାଇଁ ମୁହଁ ଖୋଲି ପଡିଛି ।



ସନ୍ଧ୍ୟାପୂର୍ବରୁ ଆଉ ଦୁଇଜଣ ଆରବ ଏବଂ ତିନିଜଣ ସ୍ତ୍ରୀଲୋକ ଆସି ପୂର୍ବ ପରିଚିତ ଲୋକଙ୍କ ସହିତ ଯୋଗ ଦେଲେ । ଆରବ ଦେଶରେ କାହାରିକୁ ଧର୍ମ ସମ୍ବନ୍ଧରେ ପ୍ରଶ୍ନ କରିବା କିମ୍ବା ଅଯାଚିତ ଭାବରେ କୌଣସି ଧର୍ମ ବିଷୟରେ ଆଲୋଚନା କରିବା ଭୟଙ୍କର ନୀତି-ବିରୁଦ୍ଧ କଥା । ମୁଁ ନୀରବରେ ତାଙ୍କ ସହିତ ଖିଆପିଆ କଲି ଆଉ ପ୍ରତ୍ୟେକଙ୍କୁ ଗୋଟିଏ ଗୋଟିଏ ସିଗାରେଟ ଦେଇ ନିଜ ବିଛଣା ଉପରେ ଆସି ବସିଲି ।

ବିଦେଶରେ ଏକାକୀ ଚଳିବାକୁ ହେଲେ ବଡ଼ ସାବଧା-ନତା ଅବଲମ୍ବନ କରିବାକୁ ହୁଏ । ଆଗତ ସ୍ତ୍ରୀ ଲୋକଗଣ ସମସ୍ତେ ଯୁବତୀ । ଯୁବତୀ ସ୍ତ୍ରୀଙ୍କ ପ୍ରତି କଟାକ୍ଷ କରିବା କିମ୍ବା ତାଙ୍କ ଆଡ଼କୁ ଆଁ କରି ଚାହିଁ ରହିବା କେବଳ ଆମ ଦେଶ ପକ୍ଷରେ ସମ୍ଭବପର ! କିନ୍ତୁ ପୃଥିବୀର ଅନ୍ୟ କେଉଁଠାରେ ଯଦି ସେ ଭଳି ହୁଏ, ତାହା ହେଲେ କେବଳ ଅପମାନିତ ହେଲେ ତ ମଙ୍ଗଳ, ଆଉ ଯଦି କାନ୍ଧରେ ବେକ ରହିଲା ତା ହେଲେ ଯାଇ ରକ୍ଷା ! କିନ୍ତୁ ମୋ'ର କୌତୁହଳୀ ଦୃଷ୍ଟି ସ୍ତ୍ରୀ ଗଣଙ୍କର କାର୍ଯ୍ୟ

କଳାପକୁ ଲକ୍ଷ କରୁଥିଲୁ । ମୁଁ ଲକ୍ଷକରି ଦେଖିଛି ତାଙ୍କଭିତରେ ପର୍ଦ୍ଦା ପ୍ରଥାଅଛି କି ନାହିଁ । ଗରିବ ସବୁଦିନେ ଗରିବ । ଗରି-ବର ପାଇଁ ପର୍ଦ୍ଦା ପ୍ରଥା ନାହିଁ । ତାଙ୍କର କର୍ମ ଅଛି, ବାଜେଧର୍ମ ନାହିଁ; ଗରିବର ଆଶ୍ରୟ ସ୍ଥଳ ବନପ୍ରାନ୍ତରରେ ଠିକ୍ । ଏମାନେ ମଧ୍ୟ ଜନହୀନ ମରୁଭୂମିର ଗୋଟିଏ କୋଣରେ ପଡ଼ି ରହିଛନ୍ତି ।

ଏଠାରେ ରାତିକଟାଇବା ବଡ଼ କଷ୍ଟସାଧ୍ୟ ହୋଇ ପଡ଼ିଲା, ମଝି ରାତିରେ ପ୍ରବଳ ଶୀତରେ ନିଦ ଭାଙ୍ଗିଗଲା । ସେମାନେ କିନ୍ତୁ ଭାରି ମଉଜରେ ମେଣ୍ଢା ଚମଡ଼ା ଘୋଡ଼ହୋଇ ଘୁଙ୍ଗୁଡ଼ି ମାରୁଥିଲେ । ରାତି ପାହିବାକୁ ଅନେକ ଡେରିଥାଏ ଖଦଡ଼ ଗୃଦ-ରଟା ଉଠାଇ ସାଇକେଲଟା ବାଟ ଉପରକୁ ଟାଣି ଆଣି ତାଙ୍କୁ ଉଠାଇବା ପାଇ ସ୍ୱର ଧରିଲି । ମୋ'ର ମିଠା ସ୍ୱରରେ ତାଙ୍କର ନିଦ ଭାଙ୍ଗିଗଲା । ପାଖରେ କୁକୁର ଥିଲେ ମୋ'ର ଗୀତ ଶୁଣି ନିଶ୍ଚୟ ମୋତେ ଅନୁସରଣ କରିଥାଆନ୍ତା । ସୁଖର ବିଷୟ, ସେମାନେ ମୋତେ ଗାଳିଦେଇ ନାହାନ୍ତି, କିନ୍ତୁ ମନେ ମନେ ବିରକ୍ତ ହୋଇଥିଲେ ବୋଲି ଜଣା ଯାଉଥିଲା । ତାଙ୍କ ପାଖରୁ ବିଦାୟ ନେଇ ପୁଣି ବେରୁତ ଆଡ଼କୁ ଅଗ୍ରସର ହେଲି ।

ପାହାଡ଼ ଓହ୍ଲାଇ ହଠାତ୍ ରାସ୍ତାଟା ପାହାଡ଼ ଉପରେ ଗୋଟିଏ ସାନ ଗାଁରେ ଅଟକି ଯାଇଛି । ଗ୍ରାମବାସୀଗଣ ସମସ୍ତେ ଖ୍ରୀଷ୍ଟାନ୍ । ଗାଁର ଆକୃତି ପ୍ରକୃତି ସବୁଥିରେ ଇଉରୋପୀୟ ଗନ୍ଧ ଲାଗିରହିଛି । ଏଠାରେ ପନ୍ଥୁଅ ପ୍ରକାଶ୍ୟରେ ମଦ ବିକି ହେବାର ସର୍ବ ପ୍ରଥମ ଦେଖିଲି । ସ୍ତ୍ରୀ ଲୋକମାନେ ମଧ୍ୟ ଇଉରୋପୀୟ ପୋଷାକ ପିନ୍ଧିଛନ୍ତି । ପୁରୁଷଗଣ ଅଧା ଇଉରୋପୀୟ ଆଉ ଅଧା ଅଧା ପୁରୁଣା ତୁରୁକଫେସନ ଧରିଛନ୍ତି । ଅବଶ୍ୟ ଏହି ସବୁ ପୋଷାକ କୃଷକ ଶ୍ରେଣୀ ମଧ୍ୟରେ ପ୍ରଚଳିତ । ଯେଉଁମାନେ ବ୍ୟବସାୟ ବାଣିଜ୍ୟ କରୁଛନ୍ତି, ସେମାନେ ସମ୍ପୂର୍ଣ୍ଣ ଭାବରେ ଇଉରୋପୀୟ ପୋଷାକ ପିନ୍ଧନ୍ତି ।

ଗାଁର ଚାରିପାଖରେ ଅଙ୍ଗୁର ଆଉ ନାନାପ୍ରକାର ଫଳର ବଗିଚା ଲାଗିଛି । ଦୂରରେ ମକା ଆଉ ଯବର କ୍ଷେତ । ଗାଁଟି ଏକାବେଳେକେ ଗ୍ରୀକ୍ ଧରଣର । ଦୁଇ ପାଖରେ ଧାଡ଼ି ଧାଡ଼ି ହୋଇ ଘର । ଘର ସମ୍ମୁଖରେ ଫୁଟ୍‌ପାଥ୍ ( ପାଦଚଲା ରାସ୍ତା ) ତା'ପରେ ପ୍ରଧାନ ସଡ଼କ । ପ୍ରତିଘର ସମ୍ମୁଖରେ ବଡ଼ ବଡ଼ ଗଛ । ଯେଉଁମାନେ କାମକୁ ଯାଇ ନ ଥାନ୍ତି ସେହି ଗଛମୂଳରେ ବସି ଗପର ମଜଲିସ୍ ଖୋଲି ଦେଇଥାନ୍ତି । ସେମାନଙ୍କର ଭାଷା ଆରବୀ । ଗାଁର ଗୋଟିଏ ପାଖରେ ଗୀର୍ଜା । ମୁଁ ଆଗକରି ଗୀର୍ଜାଟି ଦେଖିବାକୁ ଗଲି । ବହୁତ ପୁରୁଣା କୋଠା ବୋଲି ମନେହେଲା । ତା'ପରେ ଧୀରେ ଧୀରେ ଗୋଟିଏ ହୋଟେଲକୁ ଚାଲିଲି । ହୋଟେଲଟି ବେଶ୍ ସୁନ୍ଦର । ସୁସଜ୍ଜିତ କୋଠରୀ ସବୁ ରହିଛି । ଚାଳିଶ ଫ୍ରାଙ୍କ୍ ଦେଇ ଗୋଟିଏ କୋଠରୀ ଭଡ଼ା ନେଲି । ସୁତରାଂ ରାତିଟିଏ କେବଳ ରହିବା ପାଇଁ ମୋତେ ପ୍ରାୟ ଅଠଟଙ୍କା ଖର୍ଚ୍ଚ କରିବାକୁ ପଡ଼ିଲା । ଖାଇବାପାଇଁ ମଧ୍ୟ ଅନ୍ତରେ ଚାଳିଶ ଫ୍ରାଙ୍କ୍ ଖର୍ଚ୍ଚ ହୋଇଥିଲା । ଏତେ ବେଶୀ ଖର୍ଚ୍ଚ କରି ମଧ୍ୟ ମୁଁ ବିଚଳିତ ହୋଇ ନ ଥିଲି । ପରଦିନ ସକାଳେ ହୋଟେଲ ମାଲିକ ପାଖରେ ଗୋଟିଏ ଟୁରିଷ୍ଟକାର୍ଡ ( ସାହାଯ୍ୟ-ଲିପି ବିକ୍ରି କରି ଦଶଫ୍ରାଙ୍କ୍ ପାଇଥିଲି । ଗାଁର କୌଣସି ପରିବାର ମୋତେ ଦୁଇ ଫ୍ରାଙ୍କରୁ କମ୍ ଦେଇନାହାନ୍ତି । ଏହିପରି ଭାବରେ ମୋ'ର ପ୍ରାୟ ଦୁଇଶହ ଫ୍ରାଙ୍କ୍ ଆଦାୟ ହୋଇଥିଲା । ଏ ଅଞ୍ଚଳର ଲୋକେ ଏହିଭଳି ଭାବରେ ବିଦେଶିକୁ ଅତିଥି ପରାୟଣତା ଦେଖାଇ ଥାଆନ୍ତି । ଅତିଥି କୌଣସି ବ୍ୟକ୍ତି ବିଶେଷର ନୁହେ, ସମସ୍ତ ଗ୍ରାମର ଅତିଥି ସେ ! ଗାଁର ଅତିଥି ଗାଁ ହୋଟେଲରେ ରହି, ଗାଁର ଉତ୍ପାଦିତ ଅଠାର ରୋଟି, ଭଲ ମାଂସ, ତାଜାଫଳ ଆଉ ସୁସ୍ୱାଦୁ ପାନୀୟ ପିଇବାକୁ ପାଇବ । ଏଇ-ଧାରଣା ଏମାନେ ସମସ୍ତେ ପୋଷଣ କରନ୍ତି । ପ୍ରକୃତରେ ଏହା-

ଦେଖି ମୋ'ର ମନେହେଲା—ଗ୍ରାମ୍ୟ ଜୀବନହିଁ ସବୁଠାରୁ ନିଷ୍କ-ପଟ, ନିରଳସ, ସୁନ୍ଦର ଆଉ ଆରାମ-ଦାୟକ !

ପରଦିନ ସକାଳେ ଗାଁକୁ ପଛରେ ରଖି ଆଗକୁ ଚାଲିଲି, ଦୁଇପାଖରେ ପର୍ବତମାଳା ତାହାର ଉପରେ ସୁନ୍ଦର ପ୍ରଶସ୍ତ ରାଜପଥ ଚାଲିଯାଇଛି ବେରୁତ ଆଡ଼କୁ । ରାସ୍ତା ପାଖରେ କୌଣସି ଗାଁ ଗଣ୍ଡାର ଚିହ୍ନବର୍ଣ୍ଣତ ନାହିଁ । ସ୍ଥାନେ ସ୍ଥାନେ କେବଳ ପେଟ୍ରୋଲ ପାମ୍ପ; ଆଉ ତାକୁ ଆଶ୍ରୟକରି ଗୋଟିଏ ଗୋଟିଏ ରେସ୍ତୋଁରା କେଉଁଠି ବା କ୍ୱଚିତ ଗୋଟିଏ ଦୁଇଟି ହୋଟେଲ ଅଛି, ହୋଟେଲ, ରେସ୍ତୋଁରା ଆଉ ପେଟ୍ରୋଲ ପାମ୍ପର ମାଲିକଗଣ ପ୍ରାୟ ସମସ୍ତେ ଗ୍ରୀକ୍ । ଗ୍ରୀକ୍‌ଗଣ ନାନା ଭାଷାରେ ପାରଦର୍ଶୀ । ଜଣେ ଲୋକକୁ ଅନେକ ପ୍ରକାର ଭାଷା କହିବାର ଦେଖିଥିଲି । ତାଙ୍କୁ ପଚାରି ବୁଝିଲି ଯେ କୌଣସି ଭାଷା ଶିଖିବାକୁ ତାଙ୍କର ଆଦୌ କଷ୍ଟ ହୁଏ ନାହିଁ, କାରଣ ସମସ୍ତ ଭାଷା ଗ୍ରୀକ୍ ଭାଷାରୁ ଜନ୍ମ ଲଭିଛି । ଗ୍ରୀକ୍‌ଗଣ ଏହି ଅଞ୍ଚଳରେ 'ଦୋଭାଷୀ' କାମ କରୁଥିବାର ଦେଖିଲି । ତୁର୍କୀ ଏବଂ ଆରବ ଭିତରେ ଯେତେବେଳେ ବାଦବିସମ୍ବାଦ ଚାଲିଲା, ସେତେବେଳେ ତୁର୍କୀ କେବେ ଆରବୀ ଭାଷା ବ୍ୟବହାର କଲା ନାହିଁକି ଆରବ ମଧ୍ୟ ତୁର୍କୀ ଭାଷା ବ୍ୟବହାର କଲା ନାହିଁ ।

ଫରାସୀ ଭାଷା ଏ ସବୁ ଅଞ୍ଚଳରେ ଶତ୍ରୁତା ଏବଂ ମିତ୍ର-ତାର ସୀମା ଲଙ୍ଘି କେବଳ ସାଧାରଣ ଭାଷାରେ ପରିଣତ ହୋଇଛି । ଗ୍ରୀକ୍‌ଗଣ ଫରାସୀ ଭାଷାରେ ଅଭ୍ୟସ୍ତ, ସେଥିପାଇଁ ଗ୍ରୀକ୍‌ଗଣ ଦୋଭାଷୀ କାମ କରନ୍ତି । ଫଳରେ ଗ୍ରୀକ୍‌ଗଣଙ୍କର ପ୍ରତିପତ୍ତି ବଢ଼ି ଯାଇଛି ।

ଗ୍ରୀକ୍ ହୋଟେଲରେ ଆରବ ପୂଜାରୀ ନିଯୁକ୍ତ ହୋଇ-ଛନ୍ତି । ଆରବ କୁକ୍ ଖାଲି ମୁଣ୍ଡରେ କାମ କରେ । ଖାଲି ମୁଣ୍ଡରେ କାମ କରିବା ଏକ ଗୁରୁତର ବ୍ୟାପାର ।



ଖାଲି ମୁଣ୍ଡରେ ଖାଦ୍ୟ ଆଣିଦେବା ଆରବୀ ସଭ୍ୟତାକୁ ଅପମାନ କରିବାର ଅନ୍ୟ ଏକରୂପ । ଦିନେ ଆରବଗଣ ଶିରସ୍ତ୍ରାଣହୀନ ଲୋକକୁ ଦରିଦ୍ର ବୋଲି ତାଚ୍ଛଲ୍ୟରେ ତ୍ୟାଗ କରୁଥିଲେ, ପୁଣି ଦାମ୍ଭିକ ବୋଲି ଶିରଚ୍ଛେଦ କରୁଥିଲେ । କିନ୍ତୁ ବର୍ତ୍ତମାନ ଆରବଗଣ ଏ ସବୁ ବିଷୟକୁ ଲକ୍ଷ କରନ୍ତି ନାହିଁ । ସେମାନେ ଚାହାନ୍ତି ସ୍ୱାଧୀନତା । କି ଭଳି ଭାବରେ ସ୍ୱାଧୀନତାର ସଂଗ୍ରାମରେ ବିଜୟୀ ହେବା ସେହିକଥା କୁହ ଦେଖିବ ଆରବ ଯୁବକଗଣ ତମର ପଛ ଛାଡ଼ିବେ ନାହିଁ, ତୁମେ ଅଚିରେ ତାଙ୍କର ଶ୍ରେଷ୍ଠ ବନ୍ଧୁ ହୋଇ ପଡ଼ିବ ।

ରାସ୍ତା ଏଣିକି କ୍ରମଶଃ ଓହ୍ଲାଇ ଚାଲିଛି । ବ୍ରେକ୍ ଛାଡ଼ି-ଦେଇ ପୂର୍ଣ୍ଣବେଗରେ ମୁଁ ଛୁଟିଥିଲି ଆଉ ରାସ୍ତାର ଦୁଇପାଖର ଦୃଶ୍ୟ ଉପରେ ଆଖି ବୁଲାଇ ଯାଉଥିଲି । ମୋ'ର ମନ ସେତେବେଳେ ନାନା ଚିନ୍ତାରେ ଆନ୍ଦୋଳିତ ହୋଇ ଉଠୁଥିଲା । ସେତେବେଳେ ମୁଁ ନୃତତ୍ତ୍ୱବିଜ୍ଞାନ ବିଷୟରେ ଚର୍ଚ୍ଚା କରୁ-ଥିଲି, ସେଥିପାଇଁ ଏ ଅଞ୍ଚଳଟା ମୋତେ ଖୁବ୍ ଭଲ ଲାଗିଥିଲା । ମୁଁ ଭାବୁଥିଲି ଦ୍ରାବିଡ଼ମାନଙ୍କର କଥା ! ଏ ଅଞ୍ଚଳକୁ ସେମାନେ କେବେ ଆସିଲେ ଆଉ କି ଭଳି ଭାବରେ ଆସିଲେ ! କିନ୍ତୁ ଦୁଃଖର ବିଷୟ, ବାଟଟା ଯେ କେବଳ ବାଟ, ଏ କଥା ତ ଅବାସ୍ତବ ନୁହେଁ, ଏକାବେଳେକେ ଚିରନ୍ତନ ସତ୍ୟ ! ବାଟ ମଝିରେ ଗୋଟିଏ ସ୍ଥାନରେ ଖାଲ ହୋଇ ଯାଇଥିଲା । ଠିକ୍ ସେହି ସ୍ଥାନରେ ପହଞ୍ଚିବା ପୂର୍ବରୁ ମୁଁ ଖୁବ୍ ସାବଧାନତା ଅବଲମ୍ବନ କରି ବ୍ରେକ୍‌ଧରି ମଧ୍ୟ ରକ୍ଷା ପାଇଲି ନାହିଁ । ସେଇ ଖାଲରେ ବାଜି ମୋର ସାଇକେଲ ଚକଟା ଫାଟିଗଲା । ସାଇ-କେଲରୁ ଓହ୍ଲାଇ ଟିକିଏ ଆଗେଇ ଯାଇ ଗୋଟିଏ ଲୋକକୁ ପାଇଲି । ସେ ଜାତିରେ ଆରବ, ମୋତେ ଦେଖି ମୁରୁକି ମୁରୁକି ହସୁଥିଲା । ତାର ସେହି ହସ ମୋ ଛାତି ଭିତରେ ଖୁବ୍




ଜୋରରେ ଛୁଟି ପଡ଼ି ଲାଗିଲା । ମୁଁ ଆଉ ସହି ନପାରି ସାଇକେଲଟା ଗୋଟାଏ ହାତରେ ଧରି ତାର ଗୋଟାଏ ହାତକୁ ଜୋରରେ ଭିଡ଼ି ଧରି ହିନ୍ଦି ସ୍ଥାନୀରେ ଗର୍ଜନ କରି ପଚାରିଲି "ଏଇସା କେୟାଁ ହାସା ହେଆଦବା" ଲୋକଟା ମୋ ଭାବଗତି ଦେଖି ଡ଼ରିଗଲା ।

ପାଖରେ ଗୋଟାଏ ସାଇକେଲ ଦୋକାନ ଥିଲା । ସେଠାକୁ ଯାଇ ସାଇକେଲ ମରାମତି କରିନେଲି । ତାପରେ ସେହି ଆରବ ଟିର ମୁରୁକା ହସ ସହିତ ଆମ ଦେଶର ବାରେନ୍ଦ୍ର ଶ୍ରେଣୀର ବ୍ରାହ୍ମଣ ମାନଙ୍କର ଯେତେବେଳେ ତୁଳନା କରୁଥିଲି, ସେତେବେଳେ ହଠାତ୍ ମନେ ହେଲା ଆମ ଦେଶର ଅର୍ଥାତ୍ ବଙ୍ଗ ଦେଶର କୌଣସି ବ୍ରାହ୍ମଣର ଶରୀରରେ ବିନ୍ଦୁଏ ମଧ୍ୟ ଆର୍ଯ୍ୟ ରକ୍ତ ନାହିଁ । ସେମାନେ ସମସ୍ତେ ସିମେଟିକ ଅର୍ଥାତ ଆରବ । ମୋର ସେ ଧାରଣା ବର୍ତ୍ତମାନ ସୁଦ୍ଧା ଅଟଳ ରହିଛି । କାଳିଦାସଙ୍କ ସମୟଠାରୁ ଆରମ୍ଭ କରି ବର୍ତ୍ତମାନ ପର୍ଯ୍ୟନ୍ତ ଘନ ନାସାର କେତେ ବାହାଦୁରି ବର୍ଣ୍ଣନା ରହିଛି । ଯାହା ଫଳରେ ତିଳ ଫୁଲ କବିଙ୍କ ନିକଟରେ ପ୍ରିୟବସ୍ତୁ ହୋଇ ଉଠିଛି, କିନ୍ତୁ ନରଉକ୍ ଜାତିଙ୍କ ମଧ୍ୟରେ 'ତିଳଫୁଲ ଜିଣା' କୌଣସି ନାକ ଦେଖା ଯାଏ ନାହିଁ । ଇହୁଦି, ଆରବ ଏବଂ କେତେକ ଭାରତୀୟ ବ୍ରାହ୍ମଣ ମାନଙ୍କର ନାକ କେବଳ ତିଳଫୁଲକୁ ପରାଜିତ କରି ପାରିଛି ।

ଉପରୁ ତଳକୁ ଓହ୍ଲାଇ ଆସି ପୁଣି ଗୋଟାଏ କୁଦ ଉପରକୁ ଉଠିଲାବେଳେ ଏକ ଅଦ୍ଭୁତ ଦୃଶ୍ୟ ଦେଖିବାକୁ ପାଇଲି । ସେ ଦୃଶ୍ୟ ଦେଖିବା ପାଇଁ ସାଇକେଲରୁ ଓହ୍ଲାଇ ଛିଡ଼ାହେଲି । କି ମନ ମୁଗ୍ଧକର ଦୃଶ୍ୟ ! ମୋର ଦକ୍ଷିଣ ଦାଗରେ ଏକ ଅନନ୍ତ, ଶାନ୍ତ, ନୀଳ ସମୁଦ୍ର । ତାର ବକ୍ଷରେ ନାନା ଦେଶର ସାନବଡ଼ କେତେ ଜାହାଜ ନୌକା ଗୋଟିଏ ଗୋଟିଏ ବନ୍ଦ-

ପରି ଦେଖା ଯାଉଥାଏ । ଆଉ ସମ୍ମୁଖରେ ଉଚ୍ଚନୀଚ କେତେ ପ୍ରକାରର ଅଟ୍ଟାଳିକା ପୂର୍ଣ୍ଣ ଗୋଟିଏ ସହର । ସହର ବର୍ତ୍ତମାନ୍ ସୁଦ୍ଧା ଅନେକ ଦୂରରେ ଥିଲେ ମଧ୍ୟ ଖୁବ୍ ନିକଟରେ ବୋଲି ଜଣା ଯାଉଥିଲା । ସହର ଆଡ଼କୁ ନାନା ପ୍ରକାର ଯାନବାହାନ ଯିବା ଆସିବା କରୁଛି । ଦୂରରୁ ସହରଟି ଗୋଟିଏ ଛବି ଭଳି ଦେଖାଯାଉ ଥିଲା । ମୁଁ ଛିଡ଼ା ହୋଇ ସେହି ମନମୁଗ୍ଧକର ଦୃଶ୍ୟ ଦେଖିବାକୁ ଲାଗିଲି । ଅନେକ ବେଳ ଯାଏଁ ସେ ଦୃଶ୍ୟ ଦେଖି ସାରିଲା ପରେ ପୁଣି ଆଗକୁ ବଢିଲି । ପ୍ରାୟ ଦୁଇ ଘଣ୍ଟା କାଳ ସାଇକେଲ୍ ଚଳାଇ ବେରୁତ ସହରର ଉପକଣ୍ଠରେ ପହଞ୍ଚିଲି । ସେହିଠାରୁ ସାନବଡ଼ ଅନେକ ଦୋକାନ ଆରମ୍ଭ ହୋଇ ଯାଇଛି । ଆଗକରି ମୁଁ ଗୋଟାଏ ସାଇକେଲ୍ ଦୋକାନକୁ ଗଲି । ଦୋକାନୀ ଜାତିରେ ଆର୍ମାନୀ । ପୋଷାକ ପରିଚ୍ଛଦ ତାର ଇଉରୋପୀୟ ଢ଼ଙ୍ଗରେ । ଚାଲି ଚଳନ ମଧ୍ୟ ଠିକ୍ ସେଇ ପରି । ସେ କିଛି ସମୟ ମୋ ସାଇକେଲ ଆଡ଼କୁ ଚାହିଁ କହିଲା, ଅଧଘଣ୍ଟା ଭିତରେ ଟାୟାରଟାକୁ ଏକା ବେଳକେ ନୂଆ କରି ଦେଇ ପାରିବ । ମୁଁ ତା କଥାରେ ରାଜି ହେଲି । ଦୁଇଜଣ ଲୋକ ସଙ୍ଗେ ସଙ୍ଗେ ଟାୟାରଟା ଖୋଲି ପକାଇ କାମରେ ଲାଗି ପଡ଼ିଲେ । ଅଧଘଣ୍ଟା ଭିତରେ ସତକୁ ସତ ସେ ଟାୟାରଟାକୁ ମରାମତି କରି ଚକ ଲଗାଇ ଦେଇ ନିଜେ ବିଦାୟ ସମ୍ଭାଷଣ ଜଣାଇଲା ।

ମୁଁ ସହର ଆଡ଼କୁ ଚାଲିଲି । ବେଶୀ ବୁଲାବୁଲି ନ କରି ଗୋଟିଏ ଆରବ ଭଡ଼ାଘରେ କୋଠରୀ ନେଲି । ଆରବ ଭଡ଼ା ଘରର ମାଲିକ ଜଣେ ଆରବ ମହିଳା । ଇଂରାଜୀ ଆଉ ଫରାସୀରେ କଥାବାର୍ତ୍ତା କରି ପାରୁଥିଲେ । ଗୋଟିଏ କୋଠରୀପାଇଁ ଦୈନିକ କେତେ ଦେବାକୁ ପଡିବ ସେ ନିଜେ କହିଲେ । ମହିଳାଟି ମଧ୍ୟ ଇଉରୋପୀୟ ପୋଷାକ ପିନ୍ଧିଥିଲେ । ଗାଧୁଆଘର,

ବୈଠକଖାନା ପ୍ରଭୃତି ଦେଖାଇ ଦେଇ ଚାକରମାନଙ୍କ ସଙ୍ଗରେ ପରିଚୟ କରାଇ ଦେଲେ । ମୁଁ ଗାଧୋଇ ପଡ଼ି ପାଖର ଗୋଟିଏ ରେସ୍ତୋରାରୁ ଖାଇ ଆସି ବିଶ୍ରାମ କଲି । ସନ୍ଧ୍ୟାପରେ ମଧ୍ୟ ସେ ଦିନ ବାହାରକୁ କୁଆଡ଼େ ଯାଇନାହିଁ । ହୋଟେଲର ଅନ୍ୟାନ୍ୟ ଭଡ଼ାଟିଆମାନଙ୍କ ସାଙ୍ଗରେ କଥାବାର୍ତ୍ତା ହୋଇ କେତେପ୍ରକାର ସମ୍ବାଦ ସଂଗ୍ରହକରି ସେ ଦିନକ ପାଇଁ ପୂର୍ଣ୍ଣ ବିଶ୍ରାମନେଇଥିଲି ।

କୋଠରିଟି ସୁନ୍ଦର ଭାବରେ ସଜ୍ଜିତ ଥିଲା । ଚାରିପାଖର କାନ୍ଥରେ କେତେ ଲତାପତ୍ରର ଛବି ଅଙ୍କା ହୋଇଥିଲା, ତା' ଉପରେ କେଉଁଠି ପକ୍ଷୀଟିଏ ନୀରବରେ ବସିରହିଛି, କେଉଁଠି ବା ଜଳ ତରଙ୍ଗାୟିତ ହେଉଛି । କୋଠରିର ଦୃଶ୍ୟ ଦେଖି ଦେଖି ନିଦ ଆସି ଯାଇଥିଲା ।

ପରଦିନ ସକାଳେ ବେରୁତର ଛାତି ଉପରେ ସାଇକେଲ ଚଳାଇ ସମସ୍ତ ସହରଟା ବୁଲି ଆସିଲି । ପୁଣି ସନ୍ଧ୍ୟାବେଳେ ପାଦରେ ଚାଲି ବୁଲି ବାହାରିଥିଲି । ବେରୁତ ଗୋଟିଏ ବନ୍ଦର, ବନ୍ଦରରେ ନାନାଦେଶୀୟ ବାଣିଜ୍ୟପୋତ ଲଙ୍ଗର କରିଛି, କେଉଁଠାରେ ତା ମାଲ ବୋହାଇ ହେଉଛି, ପୁଣି କେଉଁଠାରୁ ମାଲ ଖଲାସ କରାଯାଉଛି । ଓପରଓଳି ଡକ୍‌ରେ ବସି ଡକ୍‌ର ଦୃଶ୍ୟ ଦେଖୁଥିଲି । ନିଗ୍ରୋ, ଗ୍ରୀକ, ଆରବ, ମାଲଟିଜ୍, ସାଇପ୍ରାସୀ, ସ୍ଲାଭ୍ ଆଉ ଅନ୍ୟାନ୍ୟ ମଜୁରଗଣ କାମରେ ଲାଗିପଡ଼ି ଆଅନ୍ତି । ଏଠାରେ କୋଣସି ତୁର୍କୀ ମଜୁର କାମ କରନ୍ତି ନାହିଁ । ତୁର୍କୀଗଣ ଏ ଦେଶରେ କେବେ ମଜୁରି କରି ନାହାନ୍ତି କି ଆଜି ମଧ୍ୟ କରନ୍ତି ନାହିଁ । ତୁର୍କଗଣ ଦିନେ ଏ ଦେଶର ଶାସନକର୍ତ୍ତା ଥିଲେ । ମଜଦୂର ଜୀବନ ତାଙ୍କ ପକ୍ଷରେ ଶୋଭନୀୟ ନୁହେ । ବର୍ତ୍ତମାନ ଫରାସୀଗଣ ଏ ଦେଶର ଶାସନକର୍ତ୍ତା, ସୁତରାଂ କୌଣସି ଫରାସୀ ମଜଦୂର ମଧ୍ୟ ଡକରେ ଦେଖାଯାଇ ନ ଥିଲା ।

ଯେଉଁଠାରେ ପ୍ରଭୁଭୃତ୍ୟର ସମ୍ବନ୍ଧ ରହିଛି ସେଠାରେ ଅନ୍ୟ ସମ୍ବନ୍ଧ ରହିପାରେ ନାହିଁ । ତୁର୍କୀ ବା ଫରାସୀଗଣଙ୍କର



ଅବସ୍ଥା ମଧ୍ୟ ଠିକ୍ ସେଇଆ । ଫରାସୀଗଣ ପୁଣି ଖ୍ରୀଷ୍ଟାନମାନଙ୍କ ସଙ୍ଗରେ ଧର୍ମର ସମ୍ବନ୍ଧ ଛାଡ଼ି ପ୍ରଭୁଭୃତ୍ୟର ସମ୍ବନ୍ଧ ଆରମ୍ଭ କରୁଛନ୍ତି । ତୁର୍କୀମାନଙ୍କ କଥା ପଛକୁ ଥାଉ । ସେମାନେ ଯେ ଦିନେ ଏହି ଦେଶରେ ରାଜତ୍ୱ କରିଥିଲେ, ତା'ର ଗନ୍ଧ ବର୍ତ୍ତମାନ ମଧ୍ୟ ପାଶୋରି ନାହାନ୍ତି । ତୁର୍କୀ ଗଲାପରେ ମୋତେ ଅନେକେ ଆରବ ଧାରଣା କରି ଅପମାନ କରିଛନ୍ତି । ମୁଁ ଯେ ଆରବ ନୁହେଁ ଏ କଥା ଅନେକ ସ୍ଥାନରେ ମୁଁ ମଧ୍ୟ ପ୍ରକାଶ କରିନାହିଁ, ଆରବ ଦୁଇପ୍ରକାର, ଶ୍ୱେତକାୟ ଏବଂ କୃଷ୍ଣକାୟ । କୃଷ୍ଣକାୟ ଆରବର ଉତ୍ପତ୍ତି ନିଗ୍ରୋ ଆଉ ଶ୍ୱେତକାୟ ଆରବର ସମ୍ମିଶ୍ରଣରେ ହୋଇଛି । କଳା ଆରବର ଦେଶରେ ଯେପରି ସମ୍ମାନ, ବିଦେଶରେ ମଧ୍ୟ ଠିକ୍ ସେହିପରି । ମୁଁ କଳା ଆରବ ବୋଲି ଘୃଣିତ ହୋଇଛି । ଘୃଣିତ ହୋଇଛି ବୋଲି ମୋ' ଭିତରେ ଯେତେ କୁସଂସ୍କାର ଥିଲା ସବୁ ଦୂର ହୋଇଯାଇଛି ।

ବେରୁତରେ କୌଣସି ହିନ୍ଦ ମସଜିଦ ନାହିଁ । କଙ୍କଣୀ ମୁସଲମାନ ହିନ୍ଦ ମସଜିଦ୍ ନ ପାଇ କୁଆଡ଼େ ଯାଇ ରହିଲା ତା'ର କୌଣସି ସନ୍ଧାନ ପାଇଲି ନାହିଁ ବୋଲି ଦୁଇଦିନ କାଳ ପରେ ବଡ଼ ଦୁଃଖହେଲା । ତୃତୀୟଦିନ ଗୋଟିଏ ସିନ୍ଧିର ଦୋକାନକୁ ଯାଇ ଖବର ପାଇଲି ଯେ, କଙ୍କଣୀ ମୋତେ ଖୋଜିବା ପାଇଁ ସେଠାକୁ ଆସିଥିଲା । ଅନେକ ଖୋଜାଖୋଜି କରି ଜଣେ ମୁସଲମ୍ ହିନ୍ଦଙ୍କ ଘରେ ଯାଇ ପହଞ୍ଚିଲି । କଙ୍କଣୀ ସେଇଠାରେ ଆଶ୍ରୟ ନେଇଥିଲା । ସେ ମୋତେ ଦେଖିଲା ମାତ୍ରକେ କୁଣ୍ଢାଇ ପକାଇ କହିଲା, "ଅଭିର ତୁମ୍‌କୋ ନେହି ଛୋଡ଼େଙ୍ଗେ", ମୁଁ ମନେ ମନେ ଭାବୁଥିଲି ଏହା ବନ୍ଧନ ନୁହେଁ, କେବଳ ମୁକ୍ତିର ପଥର ସୂଚନା । ମୁଁ ସାଇକେଲ ଭୂପର୍ଯ୍ୟଟକ ଆଉ ସେ ଜାହାଜୀ ଭୂପର୍ଯ୍ୟଟକ ।

ଜଣେ ଭାରତୀୟ ମୁସଲମାନ ଏଠାକୁ ଆସି ଏକ ଆରବ ରମଣୀଙ୍କୁ ବିବାହ କରିଥିଲେ । ତାଙ୍କର ସନ୍ତାନ ଏହି ବନ୍ଧ

ଚନ୍ଦ୍ରଲୋକ । ମୁଁ ଅଗରୁ ଏହି ଲୋକଙ୍କୁ ମୁସଲିମ୍ ହିନ୍ଦ ବୋଲି କହୁଛି, କାରଣ ତାଙ୍କର ଧର୍ମ ବୌଦ୍ଧ ଧର୍ମ ନୁହେ । ଏ ଅଞ୍ଚଳରେ ଅନେକେ ଭାବନ୍ତି, ଭାରତରେ କେବଳ ବୌଦ୍ଧ ଓ ମୁସଲମାନ ଧର୍ମ ପ୍ରଚଳିତ । ଭାରତବାସୀଙ୍କୁ ଏ ଅଞ୍ଚଳର ଲୋକେ ହିନ୍ଦ କହନ୍ତି । ହିନ୍ଦୁ ଶବ୍ଦର ଅପଭ୍ରଂଶରୁ ବୋଧହୁଏ ହିନ୍ଦ ହୋଇଛି । ଯେଉଁ ସମସ୍ତ ଭାରତବାସୀ ହଜ୍ କରିବାକୁ ଯାଆନ୍ତି ସେମାନଙ୍କୁ ମଧ୍ୟ ହିନ୍ଦ ବୋଲି କହନ୍ତି । ବେରୁତରେ ଏହି ଏକମାତ୍ର ହିନ୍ଦ ପରିବାର ଥିବାରୁ ସହରରେ ପରିବାରଟି ସୁପରିଚିତ । ହିନ୍ଦ ଭଦ୍ରବ୍ୟକ୍ତି ମୋତେ ସାଦର ସମ୍ଭାଷଣ ଜଣାଇଥିଲେ । ବାସ୍ତବିକ୍ ତାଙ୍କ ପ୍ରାଣରେ ସ୍ପନ୍ଦନ ଭରି ରହିଛି ।

କଙ୍କଣୀ ସାଙ୍ଗରେ ସମୁଦ୍ରକୂଳ ଆଡ଼କୁ ବୁଲିବାକୁ ଗଲି । ସମୁଦ୍ର କୂଳେ କୂଳେ ଯେତେବେଳେ ଯାଉଥିଲି ସେତେବେଳେ ବାଟରେ ସେହି ସିନ୍ଧିର ଦୋକାନ ପଡ଼ିଲା । ମୁଣ୍ଡରେ ଫେଜ ପିନ୍ଧି ତା ଦୋକାନରେ ଜଣେ ବସିଥିଲେ । କଥାବାର୍ତ୍ତାରୁ ଜାଣିପାରିଲି, ସେ ବର୍ମାରୁ ହଜ୍ କରିବାକୁ ଆସିଛନ୍ତି । ତାଙ୍କ ମୁଣ୍ଡରେ କେବଳ ଫେଜ ଅଛି ତା' ନ ହେଲେ ସବୁ ଇଉରୋପୀୟ ପୋଷାକ, ଅଥଚ ସେ ପୁଣି ଇସଲାମ୍‌ର ଏକାନ୍ତ ଭକ୍ତ । ଯାଙ୍କୁ ମଧ୍ୟ କଙ୍କଣୀ ମୋ କଥା ପଚାରିଥିଲା—କିନ୍ତୁ କୌଣସି ଉତ୍ତର ପାଇଲା ନାହିଁ । ବରଂ ତାକୁ ଅବଜ୍ଞା କରି ତଡ଼ି ଦେଇଥିଲେ । କଙ୍କଣୀ ମୋତେ ତାହା ଜଣାଇଥିଲା । କଙ୍କଣୀ ସଙ୍ଗରେ ସମୁଦ୍ରକୂଳରେ ଯାଇ ବସିଲି, ସମୁଦ୍ରକୂଳଟି ବଡ଼ ସୁନ୍ଦର । ମୃଦୁମନ୍ଦ ଶୀତଳ ପବନ ବୋହି ଚାଲିଛି । ସମୁଦ୍ର ନୀରବ ଏବଂ ନିସ୍ତବ୍ଧ । ହାଇଫା ନଗରର ରାସ୍ତା ଆଡ଼କୁ ମୁଁ ବ୍ୟାକୁଳ ନୟନରେ ଚାହିଁ ରହିଥିଲି । ସେ ବାଟ ମୋ ପାଇଁ ବନ୍ଦ । ମୋ ପାଖରେ ପଚିଶ ପାଉଣ୍ଡ ନାହିଁ ବୋଲି ମୁଁ ଯାଇ ପାରିବି ନାହିଁ । ଦାରିଦ୍ରର ପଥ ଚାରିପାଖରୁ ଧନୀଗଣ ବନ୍ଦ କରି ରଖିବାକୁ

ଗୃହାନ୍ତି । ସ୍ୱଦେଶରୁ ଅନେକ ଶୁଣେ ଯେ ଆରବଗଣ ଇହୁଦୀମାନଙ୍କୁ ଦେଖି ସହିପାରନ୍ତି ନାହିଁ, ଦେଶରୁ ତଡ଼ିଦିଅନ୍ତି । କିନ୍ତୁ ପ୍ରତ୍ୟକ୍ଷ ଅନୁଭୂତରେ ଜାଣିଲି, ଏହା ଏକାବେଳକେ ମିଥ୍ୟା ପ୍ରଚାର । ବିଶ୍ୱର ସମସ୍ତ ଇହୁଦୀ ଆରବ ଭିତରକୁ ଚାଲି ଆସନ୍ତୁ ଏଥିରେ ଆରବର ଯାଏ ଆସେ କ'ଣ ? ତେବେ ଆମେ ସବୁ କାହିଁକି ଏପରି ମିଥ୍ୟା ପ୍ରଚାର ଶୁଣୁ । ତା'ର ଏକମାତ୍ର କାରଣ ରାଷ୍ଟ୍ର-ନେତାଙ୍କର, ପୁଞ୍ଜିବାଦୀ ଆଉ ସାମ୍ରାଜ୍ୟବାଦୀଙ୍କର ଏହା ଏକ-ଚାଲକ ମାତ୍ର । ପୃଥିବୀର ନାନା ଅଞ୍ଚଳରେ ଇହୁଦୀମାନେ ଅଛନ୍ତି, ସେମାନେ ସମସ୍ତେ ଫିଲସ୍ତାନକୁ ଫେରି ଆସିବାକୁ ଚାହାନ୍ତି, ଆରବଗଣ ସେଥିରେ ଆଦୌ ବାଧା ଦିଅନ୍ତି ନାହିଁ । ବରଂ ସାଧାରଣ ଆରବ ଏଥିରେ ଆନନ୍ଦ ଅନୁଭବ କରନ୍ତି । ଆମ ଦେଶରେ ଯେପରି ଗୋଟିଏ ଶ୍ରେଣୀର ଲୋକ 'ବେଙ୍ଗଲ ଫର ବେଙ୍ଗଲିଜ୍' ବୋଲି ହଠାତ୍ ରୋଗଗ୍ରସ୍ତ ହୋଇ ପଡ଼ିଥିଲେ, ଆରବରେ ମଧ୍ୟ ଠିକ୍ ସେହି ଶ୍ରେଣୀର କେତେକ ଲୋକଙ୍କର ହଠାତ୍ ମୁହଁ ଖୋଲିଗଲା । ଏହି ଶ୍ରେଣୀର ଲୋକେ ଆରବ ପକ୍ଷରୁ କାଗଜ କଲମରେ ଇହୁଦୀମାନଙ୍କ ସହିତ ଲଢ଼ିବାକୁ ଲାଗିଗଲେ । ଫଳରେ ଗଣ୍ଡଗୋଳ ଆରମ୍ଭ ହେଲା । କେବଳ ଲୋକ ଏହି ଗଣ୍ଡଗୋଳରେ ଆଦୌ ଯୋଗଦେବେ ନାହିଁ ବୋଲି ସ୍ଥିର କରିଥିଲେ, କିନ୍ତୁ ସେମାନେ ମଧ୍ୟ ଶେଷରେ ବାଧ୍ୟ ହୋଇ ଗଣ୍ଡଗୋଳରେ ଯୋଗ ଦେଲେ ।

ଏହି ସବୁ ବିଷୟରେ ମୁଁ ବେରୁତରେ ଏବଂ ଦାରେସ୍-ସାଲାମରେ କେତେକ ସମ୍ବାଦ ଶୁଣିଥିଲି । ଏହା ଫିଲସ୍ତାନର ୧୯୩୫ ରୁ ୧୯୩୭ ମଧ୍ୟର ସମ୍ବାଦ କହିଲେ ଅତ୍ୟୁକ୍ତି ହେବ ନାହିଁ ।

ସମୁଦ୍ରକୂଳରେ ବେଶି ସମୟ ନ ବସି, ବେରୁତର ବ୍ୟବସାୟ କେନ୍ଦ୍ର ଅଞ୍ଚଳକୁ ଗଲି । ସ୍ଥାନଟି ବଡ଼ ସୁନ୍ଦର ଆଉ

ଇଉରୋପୀୟ ଧରଣରେ ପ୍ରସ୍ତୁତ । ଷ୍ଟ୍ରାଣ୍ଡଲ ଆଉ ଅଦାନ ସହିତ ଅନେକ ସାମଞ୍ଜସ୍ୟ ଅଛି । ବାଟର ଦୁଇପାଖରେ ସୁନ୍ଦର ଫୁଟ୍-ପାଥ । ଦୋକାନଗୁଡ଼ିକ ରାସ୍ତାଉପରେ କିଛିଦୂରକୁ ଘୁଞ୍ଚାଇ ତିଆରି ହୋଇଛି—ରାସ୍ତାଟିକୁ ପ୍ରଶସ୍ତ ରଖିବାକୁ ଏହି ନିର୍ମାଣ ପଦ୍ଧତି ଅବଲମ୍ବନ କରାଯାଇଛି । ଦୋକାନର ମାଲିକଗଣ ନାନାଜାତୀୟ ଲୋକ ହେଲେ ମଧ୍ୟ ଇଉରୋପୀୟ ପୋଷାକ ସମସ୍ତେ ପିନ୍ଧନ୍ତି । କଙ୍କଣୀ ବଡ଼ ସାହସୀ, ସେ ବେଲେ ବେଲେ ଦୋକାନକୁ ଚାଲିଯାଇ ହିନ୍ଦୁସ୍ଥାନୀ ଭାଷାରେ କୌଣସି ପଦାର୍ଥର ଦାମ ପଚାରି ବସୁଥିଲା, କାଠର ବାଟୋଇକୁ ବାଟକଥା ପଚାରୁଥିଲା । ଲୋକେ ମଧ୍ୟ ତା ସହିତ କଥାବାର୍ତ୍ତା କରି ଖୁସି ହେଉଥିଲେ । ଅମେ ନାନାପ୍ରକାର କଥାବାର୍ତ୍ତାରେ ସମୟକାଟି ଇ ଅନେକ ଅଞ୍ଚଳରେ ବୁଲାଚଲା କରି ଶେଷରେ ଗୋଟାଏ କାଫେରେ ଯାଇ ବସିଲୁ । ସେଠାରେ ଖୁବ୍ ଭିଡ଼ଥିଲା । ଆମ ମାନଙ୍କ ଦେହରେ କୋଟଥିଲା କିନ୍ତୁ ନେକ୍‌ଟାଇ ନ ଥିଲା ନାହିଁ । ଆମକୁ ଏ ଭଳି ଭାବରେ ଟେବୁଲ ଅଧିକାର କରିବାର ଦେଖି ହୋଟେଲ ମ୍ୟାନେଜ୍‌ର ଫରାସୀ ଭାଷାରେ କ'ଣ କହିଲେ, ଅମେ କିଛି ବୁଝିପାରିଲୁ ନାହିଁ । କଙ୍କଣୀ ଭଲ ଆରବୀ ଜାଣିଥିଲେ ମଧ୍ୟ, ଆରବୀ ନ କହି ହିନ୍ଦିରେ କଥାବାର୍ତ୍ତା ଆରମ୍ଭ କଲା । ଏହି ସବୁ ଅଞ୍ଚଳକୁ ଆମ ଦେଶର ଲୋକେ ଆସିଲା ମାତ୍ରକେ ଏମାନେ ଭାବନ୍ତି ହଜ୍ କରିବାକୁ ଆସିଛନ୍ତି, ଅଥବା ହଜ୍ କରି ଫେରି ଯାଉଛନ୍ତି । ପ୍ରତ୍ୟେକରେ ପକେଟ ଟଙ୍କାରେ ଭର୍ତ୍ତି ରହିଛି । ମ୍ୟାନେଜରର ନାଲି ଆଖି କଳା ଆରବଗଣ ସହି ପାରିଲେ ନାହିଁ, ସେମାନେ ଆସି ଆମ ପାଖରେ ବସିଲେ ଆଉ ମ୍ୟାନେଜରକୁ ଆମର ଖାଦ୍ୟଦେବା ପାଇଁ କହିଲେ । ଶ୍ୱେତକାୟ ଆରବ ଅନେକ ଥିଲେ ମଧ୍ୟ କେହି ଆମକୁ ସାହାଯ୍ୟ କରିବାକୁ ଆସି ନ ଥିଲେ । ଏହିଠାରେ ବର୍ଣ୍ଣ ବିଦ୍ୱେଷର ଜ୍ୱଳନ୍ତ ପ୍ରମାଣ ମିଳିଲା ।

ହୋଟେଲ୍‌କୁ ଫେରି ଯାଇ ଆମେ ଏକ ସାଙ୍ଗରେ ରହିଲୁ । ପରଦିନ କଙ୍କଣୀକୁ କହିଲି ଏଠାରୁ କୌଣସି ଗୋଟିଏ ଜାହାଜରେ କାମ କରି ତା'ର ଲଣ୍ଡନ ଯିବା ଉଚିତ । କାରଣ ବିନା ପାଶପୋର୍ଟରେ ତାକୁ ତୁର୍କୀ ଭିତରକୁ ଯିବାକୁ ଦେବେ ନାହିଁ । ମୋ କଥା ସେ ଭଲଭାବରେ ବୁଝିପାରିଲା ଅଉ ମୋ ସାଙ୍ଗରେ ଯାଇ ଅନେକ ଜାହାଜ କୋମ୍ପାନୀର ଅଫିସ ବୁଲାବୁଲି କରି, ଶେଷରେ ଗୋଟିଏ ଗ୍ରୀକ୍ ଜାହାଜରେ ଖାନ-ସାମା କାମ ପାଇ ଲଣ୍ଡନ ଦିଗରେ ଯାଇଥିଲା । କଙ୍କଣୀ ଚାଲି-ଗଲା ପରେ ମୋତେ ଅଉ ବେରୁତରେ ରହିବାକୁ ଇଚ୍ଛାହେଲା ନାହିଁ । ମୁଁ ମଧ୍ୟ ଆରବଦେଶକୁ ପଛରେ ରଖି ଆତାତୁର୍କଙ୍କ ଦେଶଆଡ଼କୁ ଅଗ୍ରସର ହେଲି ।

ରାଜକାରାଗାର
କରଞ୍ଜିଆ ( ମୟୂରଭଞ୍ଜ )
ଜାନୁଆରୀ ତା ୨୧, । ୧୯୪୭.

—ଜୟହିନ୍ଦ୍—